

ଚତୁର୍ଥ ବର୍ଷ ● ଡିସେମ୍ବର, ୧୯୫୪ ● ପଞ୍ଚମ ସଂଖ୍ୟା

# ବିଶଲ୍ୟକରଣୀ

ଡକ୍ଟର ଶ୍ରୀ ବସନ୍ତ କୁମାର ବେହୁରା

ବିଶଲ୍ୟକରଣୀ ଗୋଟିଏ ଅନାବନା ଗଛ । ଓଡ଼ିଶାରେ କେଉଁଠି କେଉଁଠି ବି ଏହାକୁ ବଣସେବତି କହନ୍ତି । ଦୂବ, ମୁଥାପରି ଏହା ଯେଉଁଠି ସେଇଠି ଉଠେ । ବିଶଲ୍ୟକରଣୀର ଔଷଧି ଗୁଣ ଅଛି । ଆଞ୍ଚୁଡ଼ି ହୋଇଗଲେ ବା ପଡ଼ି ଖଣ୍ଡିଆ ଖାବରା ହେଲେ, ଏହାର ଦିʼଗୁରିଟା ପତ୍ର ମକଚି କ୍ଷତ ସ୍ଥାନରେ ରସ ଚିପୁଡ଼ି ଦେଲେ, ଘାʼ ଶୀଘ୍ର ଶୁଖିଯାଏ । ବିଶଲ୍ୟକରଣୀ ଗଛ ତଳେ ମାଡ଼ିଥାଏ; ପତ୍ର ଛୋଟ ଓ ଟିକିଏ ମୋଟା ଏବଂ ପତ୍ରର ଧାର କମ କମ । ଫୁଲର ଡେମ୍ଫ ସରୁ ଓ ଖୁବ୍ ଲମ୍ବା । ଶୟନଶୀଳ କାଣ୍ଡ, ପତ୍ର ଓ ଫୁଲ ଡେମ୍ଫ ଲୋମଶ । ଫୁଲ ଛୋଟ ଆଉ ହଳଦିଆ, ପାଖୁଡ଼ା ଫିକା ହଳଦିଆ । ଇଂରାଜୀରେ ବିଶଲ୍ୟକରଣୀକୁ ଡେଇଜି (Daisy) କହନ୍ତି । ଏହାର ବୈଜ୍ଞାନିକ ନାମ—ଟ୍ରାଇଡ଼ାକ୍ସ ପ୍ରୋକାମ୍ବେନ୍ସ (Tridax Procumbens) । ମାନ୍ଦ୍ରାଜରେ ବିଶଲ୍ୟକରଣୀ କହିଲେ ଲୋକେ ବୁଝିବେ ନାହିଁ, ମାଲୟରେ ଡେଇଜି କହିଲେ ଲୋକେ ବଲ ବଲ କରି ଅନେଇବେ; କିନ୍ତୁ ପୃଥିବୀରେ ଯେ କୌଣସି ସ୍ଥାନରେ ଯାଇ ଜଣେ ଉଦ୍ଭିଦତତ୍ତ୍ୱବିତ୍‌ଙ୍କୁ ଗଛର ବୈଜ୍ଞାନିକ ନାମ କହିଲେ ସେ ବୁଝିନେବେ ତମେ କେଉଁ ଗଛ ବିଷୟ କହୁଛ । ତମେ ଜାଣିରଖ ଯେ ବୈଜ୍ଞାନିକ ଜ୍ଞାନର ସୁବିଧା ପାଇଁ ପ୍ରତ୍ୟେକ ଉଦ୍ଭିଦ ଓ ପ୍ରାଣୀର ଗୋଟିଏ ଗୋଟିଏ ବୈଜ୍ଞାନିକ ନାମ ଅଛି ।

ବିଶଲ୍ୟକରଣୀ ଆମ ଭାରତରେ ଯେଉଁଠି ଖୋଜିବ ସେଠି ପାଇବ, ଯେତେ ଖୋଜିବ ସେତେ ପାଇବ । କିନ୍ତୁ ସବୁଠୁ ମଜାର କଥା ହେଉଛି, ଏହା ଆମ ଦେଶର ଗଛ ନୁହେଁ । ଏହାର ଆଦି ଭୂମି ଗ୍ରୀଷ୍ମମଣ୍ଡଳୀୟ ଦକ୍ଷିଣ ଆମେରିକା । ଉଦ୍ଭିଦତତ୍ତ୍ୱବିତ୍‌ମାନଙ୍କ ମତରେ ଏହା ୧୮୩୦ ସାଲ ପୂର୍ବେ ଭାରତକୁ ଆସିଛି ଓ ଗତ ୧୨୫ ବର୍ଷ ମଧ୍ୟରେ ଦ୍ରୁତବିସ୍ତୃତି ଲାଭ କରି ଭାରତର ସର୍ବାଞ୍ଚଳରେ ଏକ ଅତି ସାଧାରଣ ଗଛରେ ପରିଣତ ହୋଇ ପାରିଛି । ଭାରତର ଉଦ୍ଭିଦମାନଙ୍କ ସମ୍ବନ୍ଧରେ ଦୁଇଟି ବୃହତ୍ ବୈଜ୍ଞାନିକ ଗ୍ରନ୍ଥ ଅଛି; ସେଗୁଡ଼ିକ—ରକ୍‌ସବାର୍ଗଙ୍କ ପ୍ରଣୀତ "ଫ୍ଲୋରା ଇଣ୍ଡିକା" ଓ ହୁକାରଙ୍କ ଦ୍ୱାରା ସମ୍ପାଦିତ "ଫ୍ଲୋରା ଅଫ୍ ବ୍ରିଟିଶ ଇଣ୍ଡିଆ" । ପ୍ରଥମ ଗ୍ରନ୍ଥ ୧୮୩୨ ଓ ଦ୍ୱିତୀୟ ଗ୍ରନ୍ଥ ୧୮୭୫ ସାଲରେ ପ୍ରକାଶିତ । ଏ ବହିଗୁଡ଼ିକରେ ବିଶଲ୍ୟକରଣୀର ନାମୋଲ୍ଲେଖ ଦେଖିବାକୁ ମିଳେ ନାହିଁ । ବସ୍ତୁତଃ ୧୮୭୫ ସାଲ ଯାଏ ମଧ୍ୟ ବିଶଲ୍ୟକରଣୀ ଏକ ସାଧାରଣ ଉଦ୍ଭିଦରୂପେ ବିସ୍ତୃତି ଲାଭ କରି ନ ଥିଲା ଓ ତେଣୁ ଉଦ୍ଭିଦତତ୍ତ୍ୱବିତ୍‌ମାନଙ୍କର ଦୃଷ୍ଟି ଆକର୍ଷଣ କରି ପାରି ନ ଥିଲା ।

ରିଡ୍‌ଲେ (Ridley) ନାମକ ଉଦ୍ଭିଦତତ୍ତ୍ୱବିତ୍ 'ପୃଥିବୀରେ ଉଦ୍ଭିଦମାନଙ୍କ ବିସ୍ତୃତି' (The dispersal of plants throughout the world) ନାମକ ପୁସ୍ତକରେ ଲେଖିଛନ୍ତି ଯେ ବିଷଲ୍ୟକରଣୀ ଭାରତକୁ ୧୮୩୦ ସାଲ ପୂର୍ବେ ଆସିଥିଲା ଓ ୧୯୩୦ ସାଲ ସୁଦ୍ଧା, ଅର୍ଥାତ୍ ଶହେ ବର୍ଷ ମଧ୍ୟରେ, ଭାରତରେ ବିସ୍ତୃତି ଲାଭ କରିବା ସଙ୍ଗେ ସଙ୍ଗେ ଭାରତରୁ ଭାରତେତର ଦେଶମାନଙ୍କରେ—ମାଳୟ ଉପଦ୍ୱୀପ, ଜାଭା, ପାପୁଆ, କୁଇନ୍‌ସଲାଣ୍ଡ, ଫିଜି, ନାଇଜେରିଆ, ଦକ୍ଷିଣ ଆଫ୍ରିକା, ମରିସିଅସ୍, ବର୍ଡ଼ରବନ, ରିଡ଼୍ରୁୟେଜ ଓ ଅନ୍ୟାନ୍ୟ ଦ୍ୱୀପକୁ ବିସ୍ତୃତି ଲାଭ କରି ପାରିଥିଲା । ଆଉ ଜାଣି ରଖ, ଯେ ସାଙ୍ଗକୁ ଆମେରିକାରେ ଫ୍ଲୋରିଡ଼ାଠାରୁ ଦକ୍ଷିଣ ଭାରତୀୟ ଦ୍ୱୀପପୁଞ୍ଜ, ମେକ୍‌ସିକୋ ଓ କଲମ୍ବିଆଯାଏ ଏହା ଏକ ବଣୁଆ ଉଦ୍ଭିଦ ।

ଗଛ ବୋଇଲେ ଟିକିଏ, ଅଥଚ ଏହାର ବିସ୍ତୃତିର କଥା ଆଲୋଚନା କଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ବିଶଲ୍ୟକରଣୀର ଶୁଖିଲା ଫୁଲକୁ ପରୀକ୍ଷା କଲେ ଦେଖିବ ଯେ ତା ଭିତରେ ଅସଂଖ୍ୟ ମଞ୍ଜି । ସେଗୁଡ଼ିକ ପ୍ରକୃତରେ ତାର ଫଳ । ବିଶଲ୍ୟକରଣୀର ବିଶେଷତ୍ୱ ଯେ ଏହାର ଫଳରେ ଗୋଟିଏ ମଞ୍ଜି । ଏଗୁଡ଼ିକ ଅତି ହାଲୁକା ଆଉ ତା ସାଙ୍ଗକୁ ଧଳା ଧଳା ଲୋମ ଲାଗି ଥାଏ । ହାଲୁକା ହୋଇଥିବାରୁ ଏହା ପବନରେ ସହଜରେ ବହୁଦୂରକୁ ଉଡ଼ିଯାଇ ପାରେ । ଉକ୍ତ ଧଳା ଲୋମ ପାରାଚୁଟ୍ ପରି କାମ କରେ । ଜଣେ ବିଶେଷଜ୍ଞ ନିରୂପଣ କରି ଅଛନ୍ତି ଯେ ଗୋଟିଏ ବିଶଲ୍ୟକରଣୀ ଗଛ ବର୍ଷକୁ ୫୦୦ରୁ ୧୫୦୦ ଯାଏ ଫଳ ଉତ୍ପାଦନ କରେ । ଏ ସବୁ ନିଃସନ୍ଦେହରେ ଏହାର ଦ୍ରୁତ ବିସ୍ତୃତି ପାଇଁ ଅତ୍ୟନ୍ତ ଅନୁକୂଳ । ପୁଣି ତା' ସାଙ୍ଗକୁ ବିଶଲ୍ୟକରଣୀର ପତ୍ର ସ୍ୱାଦହୀନ, ତାହା ଗୋରୁଗାଈ ଖାଆନ୍ତି ନାହିଁ ଓ ବୋଧହୁଏ ଛେଳି ମଧ୍ୟ ଖାଆନ୍ତି ନାହିଁ; ଆଉ ଯେ କୌଣସି ସ୍ଥାନ, ଏପରିକି ବାଲିଆ ମାଟିରେ ମଧ୍ୟ ଉଠେ ।



# କ୍ଲିଂଟନ୍‌ଙ୍କ ଭୋଜନ ପାକେଟ୍

ଶ୍ରୀ ବିପିନ ବିହାରୀ ମହାନ୍ତି

ଆଜକୁ ଚାଳିଶ ବର୍ଷ ପୂର୍ବେ ଚୀନ୍‌ରେ ଭୟଙ୍କର ଦୁର୍ଭିକ୍ଷ ପଡ଼ିଥିଲା । ଅନେକ ଲୋକ ଅନାହାରରେ ମଲେ । ମୃତ୍ୟୁର ଏହି କ୍ରୂର ତାଣ୍ଡବ ଦେଖି ଏକ କୋମଳପ୍ରାଣ ବାଳକର ହୃଦୟ କମ୍ପି ଉଠିଥିଲା । ବାଳକର ପିତା ସେଠାରେ ଧର୍ମ ପ୍ରଚାରକ ଥିଲେ ଓ ବାଳକଟି ପିତାମାତାଙ୍କ ସାଙ୍ଗରେ ପ୍ରତ୍ୟେକ ସ୍ଥାନକୁ ଯିବା ଆସିବା କରୁଥିଲା । ଲୋକଙ୍କର ଦୁଃଖ ଦୂରୀଭୂତ ହେଉ ବୋଲି ଭଗବାନଙ୍କଠାରେ ପ୍ରାର୍ଥନା କରୁଥିଲା । ଦିନେ ସେ ପ୍ରତିଜ୍ଞା କଲା ଯେ ଲୋକଙ୍କୁ ଖାଦ୍ୟାଭାବରୁ ମୁକ୍ତ କରିବା ପାଇଁ ସେ ଜୀବନ ସାରା ଚେଷ୍ଟା କରିବ ।

ପ୍ରକୃତରେ ଆଜ ୫୨ ବର୍ଷୀୟ ବୃଦ୍ଧ କ୍ଲିଂଟନ୍ ଅକ୍ଲାନ୍ତ ପରିଶ୍ରମ ଦ୍ୱାରା ତାଙ୍କର ବ୍ରତ ଅକ୍ଷରେ ଅକ୍ଷରେ ପାଳିଛନ୍ତି । ଗତ ସାତ ବର୍ଷ ଧରି ତାଙ୍କର ସସ୍ତା ପ୍ରତିଥାଳୀକୁ ନଅ ପଇସା ହିସାବରେ ଅଡ଼େଇ କୋଟି ବ୍ୟକ୍ତିଙ୍କୁ ଭୋଜନ ଦେଇ ପାରିଛି । କ୍ଲିଂଟନ୍‌ଙ୍କ ଏହି ଶସ୍ତା ଭୋଜନରେ ସବୁ ପ୍ରକାର ଖାଦ୍ୟସାର ମିଳିଥାଏ ।

ଆମେରିକାର ଲସ୍ ଏନ୍‌ଜେଲ୍‌ସରେ ଦୁଇଟି ରେଷ୍ଟୁରେଣ୍ଟ କ୍ଲିଂଟନ୍ ଚଳେଇଛନ୍ତି ଏବଂ ଗତ ବାଇଶ ବର୍ଷ ଧରି ଦୁନିଆଁର କ୍ଷୁଧାସମସ୍ୟାର ସମାଧାନ ନିମନ୍ତେ ସେ ଉତ୍ସାହର ସହିତ ଲାଗିଛନ୍ତି । ୧୯୩୦-୩୧

ସାଲରେ ବିଶ୍ୱବ୍ୟାପୀ ଆର୍ଥିକ ସଙ୍କଟ ଓ ବେକାର ସମସ୍ୟା ସମୟରେ ସେ କେବଳ ଦୁଇ ପଇସାରେ ପ୍ରତ୍ୟେକ ଲୋକଙ୍କ ପେଟକୁ ଭୋଜନ ଯୋଗାଇଥିଲେ । ସେହି ସମୟରେ ଆମେରିକାର ଶ୍ରେଷ୍ଠ ଅଭିନେତ୍ରୀଠାରୁ ଆରମ୍ଭ କରି ମିଲ୍ କାମରୁ ଅବସର ନେଇଥିବା ଶ୍ରମିକ ମଧ୍ୟ କ୍ଲିଂଟନଙ୍କ ଭୋଜନାଳୟର ଆଶ୍ରୟ ନେଇଛନ୍ତି ।

ଦ୍ୱିତୀୟ ମହାଯୁଦ୍ଧ ପରେ ଯେତେବେଳେ ୟୁରୋପ ଓ ଏସିଆରେ ଦୁର୍ଭିକ୍ଷର ଦୁର୍ଦମନୀୟ ପ୍ରକୋପ ଦେଖାଦେଲା କ୍ଲିଂଟନ୍ ଦିନ ରାତି ଚିନ୍ତାମଗ୍ନ ଥିଲେ । ୧୯୪୪ ସାଲରେ ସେ କାଲିଫର୍ଣ୍ଣିଆରେ ଏକ ଅନୁସନ୍ଧାନଶାଳାକୁ ୫୦୦୦ ଡୋଲାର ଦେଲେ ଏବଂ ତାହାର ଅଧକ୍ଷ ଡାକ୍ତର ବରସୁକ୍‌ଙ୍କୁ ଜନକଲ୍ୟାଣ ନିମନ୍ତେ ଏପରି ଏକ ଭୋଜନର ଆବିଷ୍କାର କରିବାକୁ ଅନୁରୋଧ କଲେ ଯାହା ଶସ୍ତା, ପୁଷ୍ଟିକର ଓ ସୁରକ୍ଷିତ ହୋଇ ପାରିବ । ତତ୍‌ସଙ୍ଗେ ପ୍ରତ୍ୟେକ ଧର୍ମ ଏବଂ ସମ୍ପ୍ରଦାୟର ଲୋକେ ଆନନ୍ଦରେ ଭୋଜନ କରି ପାରିବେ ।

ସେହି ସମୟରେ ଆମେରିକାରେ ଲକ୍ଷ ଲକ୍ଷ ମହଣ ସୋୟାବିନ୍ କେବଳ କୃତ୍ରିମ ଲହୁଣୀ ତିଆରି କରିବାରେ ନଷ୍ଟ ହେଉଥିଲା । ସୋୟାବିନ୍‌ର ଯେଉଁ ଅଂଶ ଫୋପାଡ଼ି ଦିଆ ଯାଉଥିଲା ତାହାକୁ ପରୀକ୍ଷା କରି ବୋର୍‌ସୁକ୍ ଦେଖିଲେ ଯେ ସେଥିରେ ଶତକଡ଼ା ୯୦ ଅଂଶ ଭିଟାମିନ୍ ରହିଛି; ତେଣୁ ସେ ଆଉ ଏକ ଖଣିଜ ଦ୍ରବ୍ୟର ସହାୟତାରେ ଏକ ନୂତନଧରଣର ଭୋଜନ ପ୍ରସ୍ତୁତ କଲେ ଯାହା ସୁପାଚ୍ୟ, ସୁସ୍ୱାଦୁ ଓ ଶସ୍ତା ହୋଇ ପାରିଲା । ଏହି ଭୋଜନ ପ୍ରସ୍ତୁତ କରିବାକୁ ମାତ୍ର ୧୦ ମିନିଟ୍ ସମୟ ଦରକାର ହୁଏ ।

କ୍ଲିଂଟନ୍ ଏହାକୁ ସର୍ବୋପଯୋଗୀ ଭୋଜନ ନାମ ଦେଇ ତିନି ସେଣ୍ଟ ( ନଅ ପଇସା )ରେ ଦେଉଥିବା ସୋୟାବିନର ପାକେଟ୍ ବିକ୍ରି ଆରମ୍ଭ କଲେ । ଏକ ପାକେଟ୍ ସୋୟାବିନ୍‌ରେ ଅଧସେର ମାଂସ, କଞ୍ଚା ଆଳୁ, ଏକ ପ୍ଲେଟ ମୋଟର୍ ଓ ଏକ ଗ୍ଲାସ ଦୁଧର ପୋଷକ ଶକ୍ତି ରହିଥାଏ ।

ଡାକ୍ତର ବୋର୍‌ସୁକ୍‌ଙ୍କ ଚେଷ୍ଟା ସଫଳ ହେବାର ସମ୍ବାଦ ପତ୍ର ପତ୍ରିକାରେ ପ୍ରକାଶିତ ହେବାରୁ ଆମେରିକାର ଲକ୍ଷ ଲକ୍ଷ ନାଗରିକ କ୍ଲିଂଟନଙ୍କ ନିକଟକୁ କୋଟି କୋଟି ଡୋଲାର୍ ପଠାଇଲେ ଏବଂ ଦୁର୍ଭିକ୍ଷପୀଡ଼ିତ ଲୋକଙ୍କୁ ସାହାଯ୍ୟ କରିବାକୁ ଅନୁରୋଧ କଲେ । କ୍ଲିଂଟନ୍ ମଧ୍ୟ ସୋୟାବିନ୍ ଉତ୍ପାଦନକାରୀମାନଙ୍କୁ ନିବେଦନ କଲେ ଯେ ନ୍ୟୂନତମ ଲାଭରେ ସେମାନେ ସୋୟାବିନ୍ ଯୋଗାନ୍ତୁ । ଲୋକେ ସୋୟାବିନ୍ ଯୋଗାଇଲେ ଓ କ୍ଲିଂଟନ୍‌ଙ୍କ ଉଦ୍ୟମ ସଫଳ ହେଲା ।

ଏହି ବିରାଟ ଯୋଜନାରୁ କ୍ଲିଂଟନ୍ ଏକ ସେଣ୍ଟ ମଧ୍ୟ ବ୍ୟକ୍ତିଗତ ଉପଯୋଗ ନିମନ୍ତେ ବ୍ୟୟ କରି ନାହାନ୍ତି । ଯେତେବେଳେ ତାଙ୍କର ସାହାଯ୍ୟପାଣ୍ଠି ଶେଷ ହୋଇଯାଏ, ସେ ପତ୍ର ପତ୍ରିକା ମାଧମରେ ଯଥେଷ୍ଟ ଅର୍ଥ ସଂଗ୍ରହ କରି ନିଅନ୍ତି । "କ୍ଲିଂଟନ-ଅକାଳ-ନିବାରକ-ସମିତି" ଏ ପର୍ଯ୍ୟନ୍ତ ଭାରତକୁ ୪୦ ଲକ୍ଷ, ଚୀନ୍ ଓ ଜାପାନକୁ ୩୦ ଲକ୍ଷ ଲେଖାଏଁ, ଜାର୍ମାନୀ ଓ କୋରିଆକୁ କୋଡ଼ିଏ କୋଡ଼ିଏ ଲକ୍ଷ ଏବଂ ଫ୍ରାନ୍ସକୁ ଦଶ ଲକ୍ଷ ଭୋଜନ ପାକେଟ୍ ପଠେଇଛନ୍ତି । ପୃଥିବୀରେ ଯେଉଁଠି ଖାଦ୍ୟଭାବ ହେଉଛି କ୍ଲିଂଟନ୍‌ଙ୍କର ଏହି ଖାଦ୍ୟ ସେଠାକୁ ଯାଉଛି ।



# ଚିଡ଼ିଆଖାନାର ଜୀବଜନ୍ତୁଙ୍କ ଖାଦ୍ୟ ସମସ୍ୟା

ସଙ୍ଗ୍ରାହକ—ଡାଃ ପି. ନାୟକ ଏମ୍. ଡ. ଏର୍

ଯେଉଁମାନେ ପ୍ରଥମ ହୋଇ କଲିକତା ଯାଆନ୍ତି ସେମାନଙ୍କର ଆଗ ଚିଡ଼ିଆଖାନା ଓ ଯାଦୁଘର ଦେଖିବା ପାଇଁ ମନ ବଳେ । ଦେଖିଲେ ମନେହୁଏ ଏତେବଡ଼ ବିରାଟ ସଂସ୍ଥା କିପରି ଚଳୁଛି । ଯାଦୁଘର ପାଇଁ ବେଶୀ ଚିନ୍ତା ନ ଥାଏ; କାରଣ ଏଥିରେ ମୃତ ଜୀବଜନ୍ତୁ ଓ ପ୍ରାଣୀମାନଙ୍କର ମୂର୍ତ୍ତି ରଖାଯାଇଥାଏ । ଏହାର ପରିଚାଳନା ପାଇଁ ବେଶୀ ଭିଡ଼ ନ ଥାଏ, କିନ୍ତୁ ଜୀବିତ ପ୍ରାଣୀମାନଙ୍କର ରକ୍ଷଣାବେକ୍ଷଣ ଓ ପରିଚାଳନା ଏକ ବିରାଟ ସମସ୍ୟା । ସେମାନଙ୍କୁ ସୁସ୍ଥ ସବଳ ରଖିବା ପାଇଁ ଭଲ କରି ଖୁଆଇବା, ମଳମୂତ୍ର ପରିଷ୍କାର କରିବା, ଗାଧୋଇଦେବା, ଖୋଇବା ପିଇବାରେ ଯତ୍ନ ନେବା, ରୋଗବ୍ୟାଧିରେ ଚିକିତ୍ସା କରିବା, କିଏ କଞ୍ଚା ମାଂସ ଖାଇବ, କିଏ ରନ୍ଧା ମାଂସ ଖାଇବ, କିଏ କଞ୍ଚା ରନ୍ଧା ଫଳମୂଳ ଖାଇବ ସେ ସବୁର ତତ୍ତ୍ୱ ନେବା ସାମାନ୍ୟ ଦାୟିତ୍ୱ ନୁହେଁ । ପୁଣି ଅଳ୍ପ କେତେଜଣ ଲୋକଙ୍କର କାମ ନୁହେଁ । ଏହାଛଡ଼ା ବାହାରୁ ପଶୁପକ୍ଷୀର ଆମଦାନୀ ଓ ବାହାରକୁ ମଧ୍ୟ ରପ୍ତାନି ଅଛି ।

ଚିଡ଼ିଆଖାନାରେ ବଣମଣିଷ ସିମ୍ପାଞ୍ଜିଠାରୁ ଆରମ୍ଭ କରି ସିଂହ, ବାଘ, ହାତୀ, ଜଳହସ୍ତୀ, ଜିରାଫ, ଘୋଡ଼ା, ଭାଲୁ, ବିଲୁଆ ପ୍ରଭୃତି ବିଭିନ୍ନ ରକମ ପଶୁ ଅଛନ୍ତି । ଓଟପକ୍ଷୀ, ମୟୂର, କାକାତୁଆ ପ୍ରଭୃତି ନାନା ଅସମ୍ଭବ ରଙ୍ଗର ଓ ରକମର ପକ୍ଷୀ ଅଛନ୍ତି । ସେମାନଙ୍କୁ ଖାଲି ମେଲରେ ଛାଡ଼ି ଦିଆ ହୋଇ ନ ଥାଏ । ସେମାନେ ପୋଷା ହୋଇଛନ୍ତି, ତେଣୁ ସେମାନଙ୍କର ଭରଣପୋଷଣ ପାଇଁ ଚିଡ଼ିଆଖାନାର କର୍ତ୍ତୃପକ୍ଷ ଦାୟୀ । ସେଥିପାଇଁ ବହୁତ କର୍ମଚାରୀ ନିଯୁକ୍ତ ରହିଛନ୍ତି ଏବଂ ଘ୨୪ଣ୍ଟା ଏମାନଙ୍କର କର୍ତ୍ତବ୍ୟ ରହିଛି । ଅଦ୍ଭୁତ ପ୍ରକାର ଖାଦ୍ୟପେୟର ବ୍ୟବସ୍ଥା କରିବାପାଇଁ ମାସକୁ ଶହ ଶହ ମହଣ ସାମଗ୍ରୀ ଲୋଡ଼ା । ତାହା ଲୋକେ

ଦେଖିଲେ ଓ ଶୁଣିଲେ ଆଶ୍ଚର୍ଯ୍ୟ ହୁଅନ୍ତି । ଯେଉଁ ପ୍ରାଣୀ ଯେପରି ସ୍ଥାନରେ ରହିବାରେ ଅଭ୍ୟସ୍ତ, ସେହିପରି ତାହା ପାଇଁ କୃତ୍ରିମ ବାସସ୍ଥଳୀ କରାଯାଇ ସେମାନଙ୍କୁ ସ୍ଥାନ ଦିଆ ହୋଇଥାଏ । ଖେଚର, ଭୂଚର, ଜଳଚର ପୁଣି ମିଶାମିଶି ପ୍ରାଣୀମାନଙ୍କର ବ୍ୟବସ୍ଥା କରିବାକୁ ପଡ଼େ । ସେହିପରି ନାନାବିଧ ସରୀସୃପ ମଧ୍ୟ ରହିଥାନ୍ତି । ସେମାନେ ପୋଷା ହୋଇଛନ୍ତି, ଖାଉଛନ୍ତି, ପୁଣି ପ୍ରାଣୀସୁଲଭ ନାଚ ଖେଳରେ ମଧ୍ୟ ମାତି ରହିଥାନ୍ତି । ଏହାକୁ ଅବ୍ୟାହତ ରଖିବା ଯେପରି ଏକ ମସ୍ତବଡ଼ କାଣ୍ଡ, ସାମଗ୍ରୀ ସଂଗ୍ରହ ମଧ୍ୟ ସେହିପରି ଏକ ବିରାଟ ବ୍ୟାପାର ।

ସିମ୍ପାଞ୍ଜିର ଦିନକର ଖାଦ୍ୟ— (୧) ଗୋଟିଏ ପାଉଁରୋଟି (୨) ଲହୁଣି ବା ମଖନ (୩) ଏକ ଡଜନ କଦଳୀ (୪) ଦୁଇଟା କାକୁଡ଼ି (୫) ଗୋଟିଏ ଆତ ଜାତୀୟ ଫଳ (୬) ୫ଟା କମଳା (୭) ୪ଟା ସିଝା ଆଳୁ (୮) ଗୋଟାଏ ପପୟା (୯) ଅନ୍ୟାନ୍ୟ ଫଳମୂଳ ।

ହାତୀ, ଗଣ୍ଡାର, ଜଳହସ୍ତୀମାନଙ୍କ ପାଇଁ ଡାଳ, ପତ୍ର, ଘାସ, କଦଳୀ ଗଛ ପ୍ରଭୃତି ଦରକାର । ସମସ୍ତଙ୍କ ପାଇଁ ଏକପ୍ରକାର ଡାଳପତ୍ର ହେଲେ ଚଳିବ ନାହିଁ କି ଏକ ପ୍ରକାର ଘାସ ହେଲେ ଚଳିବ ନାହିଁ । ଯାହାର ଯେପରି ଦରକାର ତାକୁ ସେପରି ଦେଇ ସନ୍ତୁଷ୍ଟ କରିବାକୁ ହେବ । ତାହା ନ ହେଲେ ସେ ତାହା ଛୁଇଁବ ନାହିଁ, ପୁଣି ଅପଥ୍ୟ ହେଲେ ରୋଗଗ୍ରସ୍ତ ହେବ । ଦେଶୀ ଭାଲୁମାନଙ୍କର ଖାଦ୍ୟ ଦୁଧ, ଭାତ, ଗୁଡ଼; ବିଦେଶୀ ଭାଲୁ ମାନଙ୍କର ରନ୍ଧା ମାଂସ, ଆଳୁ, ଗାଜର ଓ ବିଭିନ୍ନ ପ୍ରକାର ଡାଲି ନ ହେଲେ ରୁଚିକର ହେବନାହିଁ ।

ଅଷ୍ଟ୍ରେଲିଆର ପକ୍ଷୀମାନେ ଏକାବେଳକେ ନବାବ୍ । ସେମାନଙ୍କୁ ଆଡଜାଜ୍ଞପ୍ପ ଫଳ, କମଳା, ଅଙ୍ଗୁର ଆଦି ଫଳ ଦିଆଯାଏ । କାହାରିକୁ ଗୋଟା, କାହାରିକୁ ନିର୍ଦ୍ଦିଷ୍ଟ ଆକାରରେ ଖଣ୍ଡ ଖଣ୍ଡ କରି କାଟି ଦିଆଯାଏ । କୌଣସି କୌଣସି ପକ୍ଷୀକୁ ଦୁଧ, ରୋଟି, ଚିନାବାଦାମ, ସୋଲ୍, ସୂର୍ଯ୍ୟମୁଖୀ ଫୁଲର ମଞ୍ଜି ପ୍ରଭୃତି ଦିଆଯାଏ । କୌଣସି କୌଣସି ପକ୍ଷୀକୁ କଲିଜାକୁ ଛତୁ ସାଙ୍ଗରେ ମିଶାଇ, ଘିଅରେ ଭାଜି, କାହାରିକୁ ବା ମାଂସ ବାଛିକରି ଦିଆ ଯାଇଥାଏ । ସାଇବେରିଆର ପକ୍ଷୀମାନେ ଦିନକୁ ୫୦ ଟା ଝିଣ୍ଟିକା ଖାନ୍ତି । ଅନ୍ୟାନ୍ୟମାନେ ଧାନ, ମକ୍କା, ବାଜରା, ଚିନାବାଦାମ, ମଟର, ଶିମ୍ବ, କାଙ୍ଗି, କାକୁଡ଼ି, କନ୍ଦମୂଳ, କଦଳୀ, ଆଳୁ, ପିଜୁଳି ପ୍ରଭୃତି ଅନେକ ପ୍ରକାରର ଫଳ ଖାଇଥାନ୍ତି ।

ପକ୍ଷୀମାନଙ୍କର ରକ୍ଷଣାବେକ୍ଷଣ ପାଇଁ ପଥ୍ୟର ପ୍ରକାରଭେଦ ଏତେ ବେଶୀ ଯେ ସକାଳ ୪ ଟାରୁ ସନ୍ଧ୍ୟା ୬ ଟା ଯାଏ ଲୋକେ କାମରେ ଲାଗିଥାନ୍ତି । ସାଧାରଣତଃ ପକ୍ଷୀମାନେ ରାତିରେ କିଛି ଖାନ୍ତି ନାହିଁ । ପେଚକ ଜାତୀୟ ପକ୍ଷୀ ଖୁବ କମ୍ । ଯେଉଁ ପକ୍ଷୀମାନେ ଚିଙ୍ଗୁଡ଼ି ମାଛ ଖାନ୍ତି, ଝିଣ୍ଟିକା ଖାନ୍ତି, ଜିଅନ୍ତା ପୋକ ଖାନ୍ତି, ତାହା ସଂଗ୍ରହ କରାଯାଇ ଖାଇବାକୁ ଦିଆଯାଏ ଏବଂ ଯାହା ସହଜରେ ନ ମିଳେ ତାର ଚାଷ କରାଯାଏ । ବିଭିନ୍ନ ପ୍ରକାର ଜୀବଜନ୍ତୁମାନଙ୍କ ପାଇଁ ବିଭିନ୍ନ ପ୍ରଣାଳୀରେ ପଥ୍ୟ ତିଆରି ହୋଇ ଦିଆଯାଏ ।

ବିଦେଶରୁ ନୂଆ ଆମଦାନି କରି ପକ୍ଷୀ ସମ୍ଭାଳିବା ବଡ଼ କଷ୍ଟକର । କାରଣ ତାର ଖାଦ୍ୟ ଜଣା ନ ଥାଏ । ଗୋଟାଏ ପ୍ରକାର ଖାଦ୍ୟ ସମସ୍ତଙ୍କର ଚଳେ ନାହିଁ । ତେଣୁ ଭାରପ୍ରାପ୍ତ କର୍ମଚାରୀ ଏକ ଲମ୍ବା ତାଲିକା କରି ସେଥିରୁ ଖୁଆଇବାକୁ ଚେଷ୍ଟା କରନ୍ତି ଏବଂ ଜବରଦସ୍ତି ଖୁଆଇ ବଞ୍ଚାଇ ରଖି ପରୀକ୍ଷା କରୁଁ କରୁଁ ତାର ଖାଦ୍ୟ ଜାଣି ପାରିଲେ ସେହି ଖାଦ୍ୟକୁ ଚଳାନ୍ତି ।

ପଶୁମାନଙ୍କର ଛୁଆ ଏବଂ ପକ୍ଷୀମାନଙ୍କର ଅଣ୍ଡାରୁ ଛୁଆ ହେଲେ ସେମାନଙ୍କ ପାଇଁ ଦାୟିତ୍ୱ ବଢ଼େ ଓ ପୃଥକ୍ ବ୍ୟବସ୍ଥା ଅବଲମ୍ବନ କରିବାକୁ ପଡ଼େ । ଗ୍ଲୋଟ ଗ୍ଲୋଟ ପୋକ, ପିଠଉ ଗୁଣ୍ଡା, ଅଣ୍ଡା, କଅଁଳ ଡାଳ, ପତ୍ର, ଘାସ ପ୍ରଭୃତି ଦିଆଯାଇ ସେମାନଙ୍କୁ ସ୍ୱତନ୍ତ୍ର ଘରେ ଓ ପିଞ୍ଜରାରେ ରଖାଯାଏ ।

ରୋଗବ୍ୟାଧିର ଚିକିତ୍ସା ପାଇଁ ମଧ୍ୟ ବ୍ୟବସ୍ଥା ରହିଛି । ଡାକ୍ତରଖାନା, ଡାକ୍ତର, ଚାକର ସବୁ ପ୍ରକାର ବନ୍ଦୋବସ୍ତ ରହିଛି । ଗୋଳମାଳ ଏଡ଼ିବା ପାଇଁ ଏହା ଠିକ୍ ଏ ଲୋକଲୋଚନ ଅନ୍ତରାଳରେ ଅଛି । କଟା-କଟି ବା ଅପରେସନ ପାଇଁ ଆଧୁନିକ ଯନ୍ତ୍ରପାତି ଖଞ୍ଜା ଅଛି । ପଥ୍ୟ ପାଇଁ ବାର୍ଲି, ଗ୍ଲୁକୋଜ, ମୋହନଭୋଗ ପ୍ରଭୃତି ଦିଆଯାଏ । ପପସ୍ତା ସହିତ ସିଦ୍ଧମାଂସ ମଧ୍ୟ ଦିଆଯାଏ ।

ସାପମାନଙ୍କର ଖାଦ୍ୟ ମୂଷା, ଅସରପା, ପକ୍ଷୀ, ଝିଣ୍ଟିକା, ବାଘୁଆ ଚଢ଼େଇ, ଘରଚଟିଆ । ସାପର ଖାଦ୍ୟ ମଧ୍ୟ ସାପ ଅଟନ୍ତି । ଏ ସବୁ ଯୋଗାଇ ଦିଆ ହୋଇ-ଥାଏ । ମଜା କଥା ଏତିକି, ସାପ ସପ୍ତାହରେ ଥରେ ଖାଏ । ଶୀତ ୩ ମାସ କିଛି ଖାଏ ନାହିଁ । ସମସ୍ତଙ୍କ ପାଇଁ ତାରିଖ, ଦିନ, ଘଣ୍ଟା ସବୁ ଲେଖା ହୋଇ ରହି-ଥାଏ ।

ପ୍ରାଣୀମାନଙ୍କ ମଧ୍ୟରୁ କେତେକ ମାଂସାଶୀ, କେତେକ ନିରାମିଷାଶୀ । ପ୍ରତ୍ୟେକଙ୍କ ପାଇଁ ପୃଥକ୍ ପୃଥକ୍ ବ୍ୟବସ୍ଥା ରହିଛି । ୩୦ ଜଣ ଚାକର ଅହରହ ଲାଗି ରହିଥାନ୍ତି ।

କଙ୍କଡ଼ାବିଛା, ହନୁ, ବିରାଡ଼ି, ବିଲୁଆ ସଙ୍ଗୃହୀତ ହୋଇ ରହିଛନ୍ତି । ଏ ସ୍ଥାନଟି ନିରାପଦ ଏବଂ ଏଠାରେ ଖାଦ୍ୟ ମିଳେ, ଏହି ସମ୍ବାଦ ଆଖ ପାଖ ଜୀବଜନ୍ତୁଙ୍କୁ ଜଣାଅଛି । ତେଣୁ ସୁଯୋଗ ପାଇଲେ ସେମାନେ ଛାଡ଼ନ୍ତି ନାହିଁ । ଭିତରେ ପଶି ବଡ଼ ଗୋଳମାଳ କରନ୍ତି । ବିଶେଷତଃ ରାତିରେ ବିଲୁଆ ଗୋଟାଏ ରଡ଼ି ଛାଡ଼ିଲେ ସବୁ ଅସମ୍ଭାଳ । ଦିନରେ ଆସିଯାନ୍ତି ହନୁ । ଥରେ ଥରେ ଦଳ ଦଳ ଆସିଯାନ୍ତି । ଏମାନଙ୍କର

( ୮ମ ପୃଷ୍ଠା ଦେଖନ୍ତୁ )

# ରେଡିଓ ଭଲଭ୍

( ପୂର୍ବପ୍ରକାଶିତ ଉତ୍ତରୁ )

ଶ୍ରୀ ବଭୂତଭୂଷଣ ମହାନ୍ତି ଏମ୍. ଏସ୍‌ସି.

ଗତ ମହାଯୁଦ୍ଧ ସମୟରେ ଦୁଇଟି ନୂତନ ଭଲ୍‌ଭର ଆବିଷ୍କାର ହୋଇଥିଲା । ଏ ଦୁଇଟିର ନାମ ହେଲା 'କ୍ଲାଇଷ୍ଟ୍ରନ୍' ଓ 'ମାଗ୍‌ନେଟ୍ରନ୍' । ଏହି ଦୁଇଟି ଭଲ୍‌ଭ ସାଧାରଣ ରେଡ଼ିଓ ଭଲ୍‌ଭ ଭଳି ନ ହେଲେ ମଧ୍ୟ ସେହି ଶ୍ରେଣୀର ଅନ୍ତର୍ଭୁକ୍ତ । କ୍ଲାଇଷ୍ଟ୍ରନ୍ ଓ ମାଗ୍‌ନେଟ୍ରନ୍ ଯୋଗୁ କେବଳ ରେଡାର ତାର ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇ ପାରିଛି । ପୂର୍ବ ପ୍ରବନ୍ଧମାନଙ୍କରେ କୁହାଯାଇଛି ଯେ ରେଡ଼ାର ସାହାଯ୍ୟରେ ଯେ କୌଣସି ଗୋଟିଏ ପଦାର୍ଥର ସ୍ଥାନ ନିରୂପଣ କରାଯାଇ ପାରିବ । ରେଡାର ସାହାଯ୍ୟରେ ଉଡ଼ାଜାହାଜ ସବୁ କୁହୁଡ଼ି ମଧ୍ୟରେ ଓ ଅନ୍ଧାରରେ ଏରୋଡ୍ରାମର ରନ୍‌ୱେରେ ନିରାପଦରେ ଅବତରଣ କରିପାରୁଛନ୍ତି, ଶତ୍ରୁ ପକ୍ଷର ବୋମାବାହୀ ବିମାନଙ୍କୁ ଆଖିରେ ନ ଦେଖି ନଷ୍ଟ କରି ଦିଆ ଯାଉଛି, ସମୁଦ୍ରରେ ଗଭୀର ଅନ୍ଧକାରରେ ଜାହାଜ ସବୁ ନିରାପଦରେ ଯାଉଛନ୍ତି ଏବଂ ଆକାଶ ମେଘାଚ୍ଛନ୍ନ ଥିଲାବେଳେ କେବେ ବୃଷ୍ଟି ହେବ, ମେଘମାଳାସବୁ କେଉଁ ଦିଗକୁ ଓ କେତେ ବେଗରେ ଗତି କରୁଛନ୍ତି ତାହା ନିରୂପଣ କରାଯାଉଛି । ଅଳ୍ପ କେତେବର୍ଷ ହେବ ଜର୍ମାନୀ ଓ ଆମେରିକାରେ ଏହି କ୍ଲାଇଷ୍ଟ୍ରନ୍ ଓ ମାଗ୍‌ନେଟ୍ରନ୍‌କୁ ଅସ୍ତ୍ର ଚିକିତ୍ସା ବିଜ୍ଞାନର କାର୍ଯ୍ୟରେ ଲଗାଇ ଅପରେସନ୍ କଲାବେଳେ ରୋଗୀର କଟା ଘା'ରୁ ରକ୍ତ ବାହାରିବା ବନ୍ଦ କରିଦେଲେଣି । ଏହି ବିଭାଗୀୟ ବିଜ୍ଞାନର ନାମ ହେଲା 'ହାଇ ଫ୍ରିକ୍ୱେନ୍‌ସି ଡାଏଥର୍ମି' । ଏକ୍‌ସ୍‌ରେ' ଭଲ୍‌ଭ ମଧ୍ୟ ରେଡିଓ ଭଲ୍‌ଭ ଶ୍ରେଣୀର ଅନ୍ତର୍ଭୁକ୍ତ ଏବଂ ଏକ୍‌ସରେ' ଆଜି ମାନବସମାଜର କଲ୍ୟାଣ ସାଧନରେ ଲାଗିଛି ।

ଆଉ ଗୋଟିଏ ଧରଣର ଭଲ୍‌ଭ୍ ଆମର ବହୁତ ଦରକାରରେ ଆସେ । ଏ ଭଲ୍‌ଭଟି ରେଡ଼ିଓରେ ବ୍ୟବହୃତ ନ ହେଲେହେଁ, ଏହାର ଆନୁସଙ୍ଗିକ ଯନ୍ତ୍ରପାତିରେ ବ୍ୟବହୃତ ହୁଏ । ଏହାର ନାମ 'ଫଟୋ ଇଲେକ୍‌ଟ୍ରିକ୍ ଟିଉବ୍' । ଏହି ଟିଉବ୍ ଭିତରେ ମଧ୍ୟ ଦୁଇଟି ଇଲେକ୍‌ଟ୍ରୋଡ ଥାଏ । ଏହାର କାଥୋଡକୁ ଫଟୋ କାଥୋଡ କୁହାଯାଏ ଏବଂ ଏହା ଉପରେ ଆଲୋକ ପଡ଼ିଲେ ଇଲେକ୍‌ଟ୍ରନ୍‌ର ପ୍ରବାହ ଆରମ୍ଭ ହୁଏ । ସାଧାରଣ ରେଡ଼ିଓ ଭଲ୍‌ଭ୍‌ରେ ଯେଉଁସବୁ ଧାତୁ ବ୍ୟବହାର କରାଯାଏ ଏଥିରେ ସେ ସବୁ ଧାତୁ ବ୍ୟବହାର ହୁଏ ନାହିଁ । ଏହି ଭଲ୍‌ଭ୍ ବା ଟିଉବ୍ ଦ୍ୱାରା ସିନେମାରେ କଥା କହିବା ସମ୍ଭବ ହୋଇ ପାରିଛି । ଏହାଛଡ଼ା ଅନ୍ୟାନ୍ୟ କଳ କାରଖାନାମାନଙ୍କରେ ମଧ୍ୟ ଏହି ଟିଉବ୍ ଖୁବ୍ କାର୍ଯ୍ୟରେ ଲାଗେ । ମଟର୍‌ର ଆଲୋକ ପଡ଼ିଲେ ଫାଟକ ଆପେ ଆପେ ଖୋଲିବା, ଶ୍ରମିକମାନେ କାରଖାନାକୁ ଗଲାବେଳେ ସେମାନଙ୍କର ସଂଖ୍ୟା ନିରୂପଣ କରିବା ପ୍ରଭୃତି କାର୍ଯ୍ୟ ଏହି 'ଫଟୋ ଇଲେକ୍‌ଟ୍ରିକ୍ ଟିଉବ୍' ସହଜରେ କରିପାରେ । ଟେଲିଭିଜନରେ ମଧ୍ୟ ବହୁତ ପ୍ରକାରର ଟିଉବ୍ ବା ଭଲ୍‌ଭ୍ ବ୍ୟବହାର କରାଯାଏ । ସେମାନଙ୍କ ମଧ୍ୟରେ କାଥୋଡ୍‌ରେ ଟିଉବ୍, ଇମେଜ ଆଇକୋନୋସ୍କୋପ ଓ ଇମେଜ୍ ଅର୍‌ଥିକୋନ ପ୍ରଧାନ ।

ରେଡ଼ିଓ ରିସିଭରରେ ଥିବା ଲାଉଡ଼ସ୍ପିକର ସାହାଯ୍ୟରେ ଆମେ ଶବ୍ଦ ଶୁଣୁ । ଠିକ୍ ସେହିପରି ଟେଲିଭିଜନ୍ ରିସିଭରରେ ଥିବା କାଥୋଡ୍‌ରେ ଟିଉବ୍‌ର ପରଦାରେ ଛବିଟି ପରିଷ୍କାର ଭାବେ ଦେଖାଯାଏ । ଇମେଜ ଅର୍‌ଥିକୋନ ଓ ଆଇକୋନୋସ୍କୋପ ଟିଉବ ସବୁ ଟେଲିଭିଜନ ଟ୍ରାନ୍‌ସମିଟରରେ ବ୍ୟବହୃତ ହୁଏ । ଭଲ ଧରଣର ରେଡ଼ିଓରେ ଗୋଟିଏ ଛୋଟ ଟିଉବ୍ ଡାଏଲ ପାଖରେ ଥିବାର ଦେଖାଯାଏ । ଏହି ଟିଉବ୍‌କୁ ମ୍ୟାଜିକ୍ ଆଇ କହନ୍ତି । ଏହା ସାହାଯ୍ୟରେ

ନିର୍ଦ୍ଧାରିତ ବେତାର ଷ୍ଟେସନରୁ ଖବର ଆସିଲା କି ନାହିଁ ସଠିକ୍ ଭାବେ ଜାଣିହୁଏ । ଡାୟୋଡ୍ ଓ ଟ୍ରାୟୋଡ୍ ଭଲ୍‌ଭ୍ ଆମ୍ଭମାନଙ୍କର ସୁପରିଚିତ । ଡାୟୋଡ ସାହାଯ୍ୟରେ ଏ. ସି. ବୈଦ୍ୟୁତିକ ପ୍ରବାହକୁ ଡି. ସି. କରିହୁଏ । ଏହିପରି ବ୍ୟବହାର ହେଲାବେଳେ ଡାୟୋଡ୍‌କୁ ' ରେକ୍‌ଟିଫାୟାର ' କୁହାଯାଏ । ରେଡ଼ିଓ ରିସିଭରରେ ମଧ୍ୟ ଡାୟୋଡ୍, ଡିମଡ୍ୟୁଲେଟର ହିସାବରେ ବ୍ୟବହୃତ ହୁଏ । ଟ୍ରାୟୋଡ୍ ଭଲଭ୍‌ର ବ୍ୟବହାର ବହୁମୁଖୀ । ଏହା ସାଧାରଣ ଆମ୍ପ୍‌ଲିଫାୟାର; ଡିମଡ୍ୟୁଲେଟର ଓ ଅସ୍‌ସିଲେଟର ଭାବେ ବ୍ୟବହୃତ ହୁଏ । ଟେଟ୍ରୋଡ, ପେଣ୍ଟୋଡ ପ୍ରଭୃତି ଭଲ୍‌ଭ୍ ସବୁ କେବଳ ଦରକାର ହେଲେ ବ୍ୟବହାର କରାଯାଏ; ତେବେ ପାୱାର ଆମ୍ପ୍‌ଲିଫାୟାର ରେ ପେଣ୍ଟୋଡ଼ ବ୍ୟବହାର କରାଯାଏ ।

ମାନ୍‌ଚେଷ୍ଟର ବିଶ୍ୱବିଦ୍ୟାଳୟର 'ରେଡ଼ିଓ-ଇଂଜିନିୟରିଂ' ବିଭାଗରେ ଗୋଟିଏ ଅଦ୍ଭୁତ ଧରଣର ଯନ୍ତ୍ର ତିଆରି ହୋଇପାରିଛି । ଏଥିରେ ଅନେକ ଗୁଡ଼ିଏ ରେଡ଼ିଓ ଭଲ୍‌ଭ୍ ଅଛି ଏବଂ ଏହା ମୁହୂର୍ତ୍ତିକ ମଧ୍ୟରେ ବହୁ ସଂଖ୍ୟା ବିଶିଷ୍ଟ ଗୁଣନ, ହରଣ ପ୍ରଭୃତି ହିସାବ କରି ଫଳ ଦେଇପାରୁଛି । ମନୁଷ୍ୟ ତାର ମସ୍ତିଷ୍କ ତୁଳନା କରି ନିଜ ବୁଦ୍ଧିର ପ୍ରଖରତାକୁ ପରାଜିତ କରୁଛି । ଆମେରିକାର କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରେ ମଧ୍ୟ ଆଉ ଗୋଟିଏ ଆଶ୍ଚର୍ଯ୍ୟ ଯନ୍ତ୍ର ଆବିଷ୍କୃତ ହୋଇପାରିଛି । ଏହି ଯନ୍ତ୍ରର ନାମ 'ଇଲେକ୍ଟ୍ରୋଏନ୍‌ସିଫାଲୋଗ୍ରାଫ୍' ଏବଂ ଏହା ମନୁଷ୍ୟର ମସ୍ତିଷ୍କର ଅଭ୍ୟନ୍ତରରେ ଅହରହ ପ୍ରବାହିତ ହେଉଥିବା କ୍ଷୀଣ ବୈଦ୍ୟୁତିକ ସ୍ରୋତର ଗୋଟିଏ ଚିତ୍ର ଦେଇପାରୁଛି ।

ଏହି ଯନ୍ତ୍ରରେ ପ୍ରାୟ ଚାଳିଶରୁ ଷାଠିଏ ପର୍ଯ୍ୟନ୍ତ ବିଭିନ୍ନ ଧରଣର ରେଡ଼ିଓ ଭଲ୍‌ଭ୍ ଥାଏ । ଏହା ଅଳ୍ପ କେତେ ବର୍ଷ ହେଲା କଲିକତା ବିଶ୍ୱବିଦ୍ୟାଳୟର 'ଶରୀର ତତ୍ତ୍ୱ' ବିଭାଗକୁ ଆସିଛି । ଏହା ଦ୍ୱାରା ଯେ କୌଣସି ମନୁଷ୍ୟର ମସ୍ତିଷ୍କର କାର୍ଯ୍ୟକାରୀ ଶକ୍ତି ସମ୍ବନ୍ଧରେ ପୂର୍ଣ୍ଣ ବିବରଣୀ ମିଳେ । ଆମେରିକାରେ ମଧ୍ୟ ଇଲେକ୍‌ଟ୍ରନିକ୍ ପେନ୍‌ସିଲ୍ ନାମକ ଉଦ୍ଭାବିତ ହୋଇ-ହୋଇଥିବା ଯନ୍ତ୍ର ସାହାଯ୍ୟରେ ଜଣେ ଅନ୍ଧ ଖୁବ ସହ-ଜରେ ପଢ଼ି ପାରୁଛି ।

ଜାପାନ୍‌ରେ ରେଡ଼ିଓ ଭଲଭ ସାହାଯ୍ୟରେ ଗୋଟିଏ 'ଇଲେକ୍‌ଟ୍ରନିକ୍ ଷ୍ଟେଥୋସ୍କୋପ' ତିଆରି ହୋଇ ପାରିଛି । ଏହା ସାହାଯ୍ୟରେ ମନୁଷ୍ୟର କୌଣସି ଗୋଟିଏ ଅବ-ୟବକୁ ପରୀକ୍ଷା କଲାବେଳେ ଶବ୍ଦ ଶୁଣିବା ସଙ୍ଗେ ସଙ୍ଗେ ଗୋଟିଏ ଫଟୋ ମଧ୍ୟ ଉଠିବାର ବ୍ୟବସ୍ଥା ଅଛି । ସେହି ଫଟୋଦ୍ୱାରା ମନୁଷ୍ୟର ସେହି ଅବୟବର ପୁଂଖାନୁପୁଂଖ ବିଶ୍ଳେଷଣ ହୋଇପାରେ । ଜର୍ମାନୀରେ ରେଡ଼ିଓ ଭଲ୍‌ଭ୍ ସାହାଯ୍ୟରେ ଓ୍ୟାର୍ ତିଆରି ହେବାର ଚେଷ୍ଟା ଚାଲିଛି । ବର୍ତ୍ତମାନ ସମଗ୍ର ପୃଥିବୀରେ ପରମାଣୁ ଗବେଷଣା ପାଇଁ ଯେଉଁ ବିରାଟ ଯୋଜନା ସବୁର ପରିକଳ୍ପନା ଚାଲିଛି, ସେଥିରେ ମଧ୍ୟ 'ରେଡ଼ିଓ ଭଲ୍‌ଭ୍' ତାର କର୍ତ୍ତବ୍ୟ କରୁଛି । କେତେଗୁଡ଼ିଏ ରେଡ଼ିଓ ଭଲ୍‌ଭ୍‌ରେ ପ୍ରସ୍ତୁତ ହୋଇଥିବା 'ଗିଗର ମୁଲର କାଉଣ୍ଟର' ପର-ମାଣୁ ଗବେଷଣାର ବହୁତ କାର୍ଯ୍ୟରେ ଲାଗେ ।

ଭାରତରେ ରେଡିଓ ଭଲଭ ତିଆରି କାରଖାନା ଏପର୍ଯ୍ୟନ୍ତ ପୂର୍ଣ୍ଣାଙ୍ଗପ୍ରାପ୍ତ ହୋଇନାହିଁ । ବାଙ୍ଗାଲୋରରେ ଭଲ୍‌ଭ୍ ତିଆରି କାରଖାନା ହେବାର ସବୁ ଯୋଗାଡ଼ ହେଲାଣି । ୧୯୫୭ରୁ କାର୍ଯ୍ୟ ଆରମ୍ଭ ହେବାର ଆଶା । କଲିକତା ବିଶ୍ୱବିଦ୍ୟାଳୟର 'ଇନ୍‌ଷ୍ଟିଚିଉଟ୍ ଅଫ୍ ରେଡ଼ିଓ ଫିଜିକସ୍ ଆଣ୍ଡ ଇଲେକ୍‌ଟ୍ରନିକସ୍' ରେ ଗୋଟିଏ ଛୋଟ ଭଲ୍‌ଭ୍ ତିଆରି କଳ ଅଛି । ଏହା ସାହାଯ୍ୟରେ ଖରାପ ହୋଇଥିବା ରେଡ଼ିଓ ଭଲ୍‌ଭ୍ ମଧ୍ୟ ସଜଡ଼ା ହୁଏ ।

ରେଡ଼ିଓ ଭଲ୍‌ଭ୍ ସମ୍ବନ୍ଧୀୟ ବିଜ୍ଞାନର ଆଧୁନିକ ନାମ 'ଇଲେକ୍‌ଟ୍ରନିକସ୍ ।' ଭାରତରେ ଇଲେକ୍‌-ଟ୍ରନ୍‌ସ୍ ବର୍ତ୍ତମାନ ଶିଶୁ ଅବସ୍ଥାରେ । ତଥାପି ଭାରତ ସ୍ୱାଧୀନ ହେବା ଦିନ ଠାରୁ ଇଲେକ୍‌ଟ୍ର-ନିକସ୍ ଗବେଷଣା ଭାରତରେ ବହୁତ ଆଗେଇଛି । ଦିନ ଆସିବ ଯେତେବେଳେ ଭାରତ ଇଲେକ୍‌ଟ୍ରନିକସ୍ ଗବେଷଣାରେ ଅନ୍ୟାନ୍ୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶ-ମାନଙ୍କର ସମକକ୍ଷ ହେବ ।

( ୬ମ ପୃଷ୍ଠାର ଅବଶିଷ୍ଟାଂଶ )

ଉଦ୍ୟାନରେ କର୍ମଚାରୀମାନେ ହଇରାଣ ହେଲେ । ସନ୍ଧା ବସାଇଲେ । ଫଳରେ ଗୋଟାଏ ହନୁ ପରିବାର ତା ଭିତରେ ପଶିଲାମାତ୍ରକେ ସନ୍ଧା ପଡ଼ିଗଲା । କାରାରୁଦ୍ଧ ଅବସ୍ଥାରେ ଆଜିଯାଏ ୭ ଜଣ ଯାକ ସଜା ପାଇ ରହିଛନ୍ତି ।

ଜୀବଜନ୍ତୁଙ୍କ ଚିକିତ୍ସା ବିଷୟରେ ଉପରେ ସାମାନ୍ୟ ସୂଚନା ଦିଆଯାଇଅଛି । ସେଦିନ ଗୋଟେ ଭୀଷଣ ସିଂହର ପଛ ପାଖ ଡାହାଣ ଗୋଡ଼ରେ ବାତ ହେଲା । ଏଡ଼େବଡ଼ ହିଂସ୍ର ଜନ୍ତୁଟାକୁ ଡାକ୍ତରଖାନାକୁ ନେବା ଏକ ସମସ୍ୟା । ଜୋର ଜବରଦସ୍ତି କଲେ ପୁଣି ଆଘାତ ପାଇ ଅନ୍ୟ ଉପସର୍ଗ ବାହାରି ପାରେ । ଡାକ୍ତର ବାବୁ ବହୁତ କୌଶଳ ବୁଦ୍ଧି ପ୍ରୟୋଗ କରି ସ୍ୱତନ୍ତ୍ର ପିଞ୍ଜରା ଭିତରକୁ ସିଂହକୁ ନେଇ ଡାକ୍ତରଖାନା ଇନ୍‌ଜେକ୍‌ସନ୍ ଦେଲେ । ସିଂହ କ୍ରମେ କ୍ରମେ ଆରାମ ହୋଇଗଲା । ଏହା ଆଫ୍ରିକାର ବଡ଼ ସିଂହ । ଏହିପରି ପ୍ରାୟ ଉଣା ଅଧିକେ ୨୦୦୦ ଜୀବଜନ୍ତୁଙ୍କ ପାଇଁ ୩୦ ଜଣ ଚାକର ଅଛନ୍ତି । କେଉଁ ଜନ୍ତୁ କେଉଁ ଖାଦ୍ୟ ସବୁ ଖାଇଲା, କାହାକୁ ଅଧା ଖାଇଲା, କାହାକୁ ଆଦୌ ଖାଇଲାନାହିଁ ଏ ସବୁ ବିଷୟ ଦେଖି ସେମାନେ କର୍ତ୍ତୃପକ୍ଷଙ୍କୁ ରିପୋର୍ଟ କରିବେ । ଆବଶ୍ୟକ କ୍ଷେତ୍ରରେ ପରିଚାଳକ ବା ଡାକ୍ତର ତାର ତତ୍ତ୍ୱ ନିଅନ୍ତି ।

ପ୍ରାଣିସୁଲଭ ଚପଳତାରେ ଅନେକ ପଶୁପକ୍ଷୀ ନିଜ ନିଜ ମଧ୍ୟରେ ଖେଳଗୋଳ କଲି କରି କ୍ଷତ ବିକ୍ଷତ ହୁଅନ୍ତି ଏବଂ ଏପରି ଖଣ୍ଡିଆ ଖାବରା ହେଲେ ତାର ତୁରନ୍ତ ବ୍ୟବସ୍ଥା କରାଯାଏ । ଏହାଛଡ଼ା, ବେଳେ ବେଳେ ସଂକ୍ରାମକ ରୋଗର ପ୍ରଭାବ ଦେଖାଯାଏ । ଏହାର ଆଶୁ ପ୍ରତିକାର କରି କର୍ତ୍ତୃପକ୍ଷ ପ୍ରାଣୀମାନଙ୍କୁ ରୋଗଦାଉରୁ ରକ୍ଷା କରନ୍ତି । ଭିନ୍ନ ଭିନ୍ନ ପ୍ରାଣୀମାନଙ୍କ ପାଇଁ ସ୍ଥାନ ମଧ୍ୟ ପୃଥକ୍ ପୃଥକ୍ ହୋଇ ରହିଛି । ପୀଡ଼ିତ ପକ୍ଷୀମାନଙ୍କୁ ଆଲୋକ ଓ ଶୁଷ୍କ ନିୟନ୍ତ୍ରଣ କରି ରଖାଯାଏ ଓ ଚିକିତ୍ସା କରାଯାଏ । ମୋଟ ଉପରେ ଆଧୁନିକ ବୈଜ୍ଞାନିକ ପ୍ରଣାଳୀର ବିଧି ବ୍ୟବସ୍ଥା ଯଥାସମ୍ଭବ ପୂର୍ଣ୍ଣ ଭାବରେ ରହିଛି ।

ଅନେକେ ବ୍ୟକ୍ତିଗତ କୌତୂହଳ ସାଧନ ପାଇଁ ନିଜ ଘରେ ନାନାବିଧ ପଶୁ ପକ୍ଷୀ ରଖିଥାନ୍ତି । ପୋଷା ଅବସ୍ଥାରେ ସେମାନଙ୍କର ପୀଡ଼ା ହୁଏ । ତାହାର ପରାମର୍ଶ ଓ ଚିକିତ୍ସା ପାଇଁ ସେମାନେ ଚିଡ଼ିଆଖାନାର ପଶୁ ଡାକ୍ତରଖାନାକୁ ଯାଆନ୍ତି । ପରାମର୍ଶ ବା ଔଷଧ ନେଇ ନିଜର ପ୍ରିୟ ଜୀବ ଜନ୍ତୁର ଦୁର୍ଦ୍ଦଶା ମୋଚନ କରନ୍ତି । ଏପରି ବହୁତ ଲୋକେ ସେଠାକୁ ଯାଆଆସ କରନ୍ତି ।

ଜନତାର ଶିକ୍ଷା ଓ କୌତୂହଳ ଚରିତାର୍ଥ କରିବା ପାଇଁ ଜଗତରେ ଏହି ବିରାଟ ପରିବାରର ରକ୍ଷଣାବେକ୍ଷଣ ଓ ପରିଚାଳନା ଦିଗରେ କେତେ ଶକ୍ତି, ଧନ, ସାମଗ୍ରୀ ବ୍ୟୟିତ ହେଉଛି, ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

—(Daily Statesman)



# ହାର୍‌ମୋନିକା ବା ସପ୍ତସ୍ୱରୀ

**( Mouth Organ )**

ଶ୍ରୀ ଦିଲ୍ଲୀପ ମିଶ୍ର

ଦିନକର ସକାଳ । ନିଉୟାର୍କ ସହରରେ ମାଗନସ୍ ନାମକ ଜଣେ ଦରିଦ୍ର ଯୁବକ ଆସି ପହଞ୍ଚିଲେ । କୌଣସି ହୋଟେଲରେ ରାତିଟି ପାଇଁ ସେ ଗୋଟିଏ ବଖରା ଭଡ଼ା ନେଲେ । ତତ୍‌ପରଦିନ ସକାଳେ ଶସ୍ତା ପ୍ରାତଃ ଭୋଜନ ପାଇବା ଆଶାରେ ସହର ମଧ୍ୟରେ ଘୁରି ବୁଲିଲେ । ସହରର ଚାକ-ଚକ୍ୟରେ ମଜ୍ଜିଯାଇ ସେ ନିଜର ଭଡ଼ା ନେଇଥିବା ଘର ଓ ନିଜର ଆସବାବପତ୍ର କିଛି ଖୋଜି ପାଇଲେ ନାହିଁ । କିଛିଦିନପରେ ସେ ବ୍ରୋକଲିନ୍‌ର ବଜାରରେ ଗୋଟିଏ କ୍ଷୁଦ୍ର କାମ ପାଇଲେ । ଭାଗ୍ୟକ୍ରମେ ସେ ପାତ୍ର ପରିଷ୍କାର କରିବା କାମରୁ ଉଠି ଉଠି ଦିନେ କାର୍-ଖାନା କାରିଗର ଓ ତତ୍‌ପରେ କାରଖାନା ଭଣ୍ଡାର ଗୃହର କିରାଣୀରୂପେ ନିଯୁକ୍ତ ହେଲେ ।

ପୁଣି କିଛିଦିନପରେ ସେ ସେଠାର ଚାକସ୍ ଗୁଡ଼ ବୁଲଟନ୍ କର୍ପୋରେସନ ନାମକ ଏକ କମ୍ପାନୀରେ କାର୍ଯ୍ୟ ଗ୍ରହଣ କଲେ । ୯ବର୍ଷ ଭିତରେ ସେ ଜଣେ ରାବି କାରଖାନା ଚାଳକ ଓ ତପ୍ତରେ କାରଖାନାର ତତ୍ତ୍ୱାବଧାରକ ଓ ସର୍ବଶେଷରେ ସେ ସେଠାର ଜେନେରାଲ ମାନେଜର କାର୍ଯ୍ୟରେ ନିଯୁକ୍ତ ହେଲେ । ଏହି ସମୟରେ ସେ ପ୍ଲାଷ୍ଟିକ୍ ବିଷୟରେ ଅନେକ ଗବେଷଣା କରିଥିଲେ ।

ଦିନେ ମାଗନସ୍ ଗୋଟିଏ "ହାର୍‌ମୋନିକା" କ୍ରୟ କରିବା ଉଦ୍ଦେଶ୍ୟରେ ଦୋକାନରେ ପହଞ୍ଚିଲେ । କିନ୍ତୁ ସେ ଗୋଟିଏ ହେଲେ ହାର୍‌ମୋନିକା ପାଇଲେ ନାହିଁ । ସେତେବେଳେ ଇଂଲଣ୍ଡ ସହିତ ଜାପାନ ଓ ଜର୍ମାନୀର ଦ୍ୱିତୀୟ ପୃଥିବୀ ଯୁଦ୍ଧ ଲାଗି ରହିଥିଲା । ଜାପାନ ଓ ଜର୍ମାନୀ ଇଂଲଣ୍ଡକୁ କେବଳ "ହାର୍‌ମୋନିକା" ରପ୍ତାନି କରୁଥିଲେ । ଯୁଦ୍ଧ ସମୟରେ ସେମାନେ ଏହା ରପ୍ତାନି କରିବା ବନ୍ଦ କରି ଦେଇଥିଲେ । ଏହି ଘଟଣାହିଁ ମାଗନସ୍‌ଙ୍କୁ ତାଙ୍କ ଜୀବନରେ ଅନ୍ୟ ଏକ ପଥକୁ ଟାଣି ନେଇଥିଲା । ସେ ନିଜ କାରଖାନାରେ "ହାର୍-ମୋନିକା" ଉତ୍ପନ୍ନ କରିବାକୁ ମନେ ମନେ ସ୍ଥିର କଲେ । ସେ ଜାଣିଥିଲେ ଜର୍ମାନ "ହାର୍‌ମୋନିକା"ର ତିଆରି ପ୍ରଣାଳୀ । କିନ୍ତୁ ସେ ଏହାକୁ ଆହୁରି ସୁବିଧାରେ ଓ ଯେପରି କମ୍ ସମୟରେ ତିଆରି ହୋଇ ପାରିବ ସେପରି କରିବା ପାଇଁ ଚେଷ୍ଟାରେ ଲାଗି ପଡ଼ିଲେ ।

ପାଞ୍ଚ ବର୍ଷର ଗଭୀର ଗବେଷଣା ଓ ପରୀକ୍ଷା ପରେ ମାଗନସ୍ ଗୋଟିଏ ନୂଆ "ହାରମୋନିକା" ଉଦ୍ଭାବନ କଲେ । ଏହା ପାଞ୍ଚଟି ଭାଗରେ ବିଭକ୍ତ ଏବଂ କେବଳ ୧୫ ସେକେଣ୍ଡରେ ଗୋଟିଏ ତିଆରି ହୋଇପାରିବ । ମାଗନସ୍ ତାଙ୍କ କମ୍ପାନୀର ହାର-ମୋନିକାକୁ ଅନ୍ୟାନ୍ୟ ଦେଶକୁ ମଧ୍ୟ ରପ୍ତାନି କଲେ । ମାଗନସ୍ ଏବେ ସୁଦ୍ଧା ପୃଥିବୀର ୩୩ଟି ରାଷ୍ଟ୍ରକୁ ତାଙ୍କର ହାର୍‌ମୋନିକା ରପ୍ତାନି କରନ୍ତି । ୧୯୩୬—୩୮ରେ ସେ ଜାପାନ, ଜର୍ମାନୀ ଓ ଆମେରିକାର ଯୁକ୍ତରାଷ୍ଟ୍ରକୁ ୩୨,୦୦୦,୦୦୦ ଗୋଟି "ହାର୍‌ମୋନିକା" ରପ୍ତାନି କରିଥିଲେ ଓ ପ୍ରତିବର୍ଷ ମଧ୍ୟ ଲକ୍ଷାଧିକ ମୁଦ୍ରାର ହାର୍-ମୋନିକା ରପ୍ତାନି କରନ୍ତି ।

ଆଜିକାଲି ଅନେକ କମ୍ପାନୀ ହାର୍‌ମୋନିକା ତିଆରି କଲେଣି । ଏହା ଆଜିକାଲି ଗୋଟିଏ ସଙ୍ଗୀତ ଯନ୍ତ୍ର ହିସାବରେ ବ୍ୟବହୃତ ହେଉଅଛି ।



# ପିଲାଙ୍କ ପକେଟ

## ଶଙ୍ଖ-କୋଇଲି (ଗଳ୍ପ)

ଶ୍ରୀ ମୋହନ ମୁରାରି ବାରିକ

( ପୂର୍ବ ପ୍ରକାଶିତ ଉତ୍ତାରୁ )

କଳ···କଳ···କଳ··· !

ଧୋ···ଧୋ···ଧୋ··· !

ଦୁଇଟି ପୀଡ଼ିତ ଆତ୍ମା ! ଦୁଇଟି ମୁକ୍ତି-ପାଗଳ ଜୀବନ । ଆଜଯାଏ ବନ୍ଧନରେ ପଡ଼ି ଛଟପଟ ହେଉଥିଲି । ମୁକ୍ତି ! ଜୀବନରେ ଏହାଠାରୁ ବଳି ଆଉ ପବିତ୍ର କ'ଣ ଅଛି ? ବିଚିତ୍ର କେଉଁ ଜିନିଷ ?-ସୁନ୍ଦର, ଉଜ୍ଜ୍ୱଳ, ମଧୁର କେଉଁ ଚିଜ ? ମୁକ୍ତିର ମାଧୁରୀରେ ପାଗଳିନୀ ଦି ଭଉଣୀ ମିଳିତ କଂଠରେ ଗାଇଲେ ସେଇ ମହାନ୍ ଉଦାର ସଂଗୀତ !

ଆଉ ଦଣ୍ଡେ··· ! ଆଉ ଦଣ୍ଡେ ଅଟକିଗଲେ ଦିହେଁ । କାହିଁକି ? କାହାଯୋଗୁଁ ? ମୋହ-ମମତା ! ସଂସାରର ଆକର୍ଷଣ ! ମିଳନର ମାଧୁରିମା ! ଦିହେଁ ଛୁଆରୁ ଏଉଁଠିଏ ହେଲେ—ଏକାଠି । ଅଥଚ ଆଜି ଅଲଗା ହେଉଛନ୍ତି ! ଛାଡ଼ି ସହିବ କେମିତିକେ ? ଶଂଖ ଡାକିଲି "କୋଇଲି !" କୋଇଲି ଡାକିଲି-"ଶଂଖ ! କିପରି, କିପରି ସହିବା ଏ ବିଚ୍ଛେଦର ଗୁରୁଭାର ?"

ପୁଣି ଦିହେଁ ବିଚାର କଲେ । ଶଂଖ ବାଛିନେଲି ଗୋଟିଏ ବାଟ । କୋଇଲି ଅନ୍ୟଟି । ଶଂଖ ବାଟ ବେଶୀ ଦୂର । ତାକୁ ଲାଗିବ ଛ' ମାସ । କୋଇଲିର ଅଳ୍ପ ବାଟ । ମୋଟେ ଛ' ଦିନର । ସେମାନେ ଯାଇ ମିଳିବେ ପରାଶରଙ୍କ ଆଶ୍ରମ ନିକଟରେ; ପୁରାଣପ୍ରସିଦ୍ଧ ପରାଶରଙ୍କ ପୁଣ୍ୟ ଆଶ୍ରମଠି ମିଳିବେ ଶଂଖ ଆଉ କୋଇଲି । ତା' ଆଗରୁ କେହି ପଛକୁ ଚାହିଁବେନି । ଯେ ଚାହିଁବ ସେ ତେଣିକି ସେଇଠୁ ରହିବ ଆଖି ବୁଜି-ବୁଜିକା ।

ଟପ୍···ଟପ୍···ଟପ୍···! ଗଡ଼ି ପଡ଼ୁଛି ଲୁହ । ତତଲା ତତଲା ଲୁହ ; ଦୁଃଖର । ବୁଢ଼ା ବାପାର ଆଖିରୁ ଝରୁଚି ଲୁହ । ଆଖିର ପିତୁଳା ତାର ସେମାନେ ତାକୁ ଛାଡ଼ିଗଲେ । ସବୁଦିନ ଲାଗି । ଅନନ୍ତକାଳ ପାଇଁ । ଦି' ଭଉଣୀ ବାପ ଆଡ଼କୁ ଚାହିଁଲେ । ଘର, ଦୁଆର, ଗାଁ, ଗାଁର ପୋଖରୀ, ଗାଁର ସେଇ ଛୋଟ ପାହାଡ଼, ଗାଁ ଦାଣ୍ଡର ସାଙ୍ଗ ସାଥି, ସଭିଏ ମନେ ପଡ଼ିଲେ ଗୋଟିଏ ଗୋଟିଏ ହୋଇ । କିନ୍ତୁ ଆଉ ଯେ ବାଟ ନାହିଁ, ବାପକୁ ଶେଷ ନମସ୍କାର ଦେଇ ସେମାନେ ପାଦ ବଢ଼ାଇଲେ ଆଗକୁ !

ଝିଅ ଦି'ଟିଙ୍କ ଯିବା ବାଟକୁ ବୁଢ଼ା ଚାହିଁ ରହିଲା । ଅନେକ ବେଳ ତାର କଟିଗଲା । ଆକାଶରେ ମେଘର ଗୁରୁ ଗୁରୁ ନାଦ ।

ଘରକୁ ସେ ଫେରିଲା । କାହିଁ, କାହିଁ ତାର ଘର ? ଜୀବନ ? ଆଉ କାହା ପାଇଁ ? କୋଉଥି ପାଇଁ ? ଘରର ସବୁ ମମତାର ଡୋରି ତାର ଛିଡ଼ିଗଲା ! ବୁଢ଼ୀଆଣୀ ଜାଲରେ ଟେକାଟାଏ ପଡ଼ିଲେ ଏଇପରି ଛିଡ଼ି ଅସ୍ତ-ବ୍ୟସ୍ତ ହୋଇଯାଏ । ମନେ ମନେ ସେ ଆହୁରି ବିରକ୍ତ ହୋଇ ଉଠିଲା ।

ତା' ପରଦିନ ! ସେ ଦେଖିଲା ତାର ସେଇ ସ୍ତ୍ରୀ ଧାନ ଶୁଖାଉଚି । ବୁଢ଼ା ଢେଙ୍କି ମୁଣ୍ଡରେ ଆଙ୍କିଦେଲା ସିନ୍ଦୁର ବିନ୍ଦୁ । ଆଖି ତାର ପଲକ ପଡ଼ୁନି । କାଠର ସେଇ ଢେଙ୍କିଟା, ଅନ୍ୟବେଳେ ଡାକୁଥାଏ··· ଢକର ଢାଇ··ଢକର ଢାଇ··· ! ଏଇଲାଗେ ତାହା ଗୋଟାଏ ବିରାଟ ସାପ । ଲହ ଲହ ଜିଭ ଦି'ଟା ବାହାର କରି ସେ ପବନ ପିଉଛି । ମଣିପରି ଉଜ୍ଜ୍ୱଳ ଆଖି ଦି'ଟା ଜଳି ଉଠୁଚି ଦପ୍···ଦପ୍··· ! ସୁ··· ସୁ···ସୁ··· ! ରାଗରେ ଗର୍ଜନ ସେ ଛାଡ଼ୁଛି । ବୁଢ଼ା ଡରି ଛାନିଆଁ । ସାଉତ ମା'ଟି ଗୋଟାପଣେ ଥରିବାକୁ ଆରମ୍ଭ କଲା ।

ଖପ୍··· ! ବେଶ୍ ! ସେତକ ! କାହିଁ ସାପ ? କାହିଁ ସେ ସାଉତ ମା'ଟି ? ସବୁ ଅଦୃଶ୍ୟ ! ବୁଢ଼ା ଆଖି ମଳିଲା । ସପନ ନୁହେତ ! ଫୁଁ କିନା ନିଃଶ୍ୱାସଟାଏ ଛାଡ଼ି ସେ ବସିଗଲା । ପାପ ଗଲା ।

ଏଇ ସାନମା'ର ଥିଲା ଗୋଟିଏ ଝିଅ । ତା ନାଁଟି ସର । ଲୋକେ ବୋଲନ୍ତି—"ସର ବୋଇଲେ ସେ ସରଟିଏ···ଝିଅଙ୍କ ଭିତରେ ସାରଟିଏ !" ମା' ଯାର ଏଡ଼େ ସଇତାନ···ତାର ଝିଅ ସର—ଦେବତାର କନ୍ୟା··· । ପଙ୍କ ଭିତରେ ପଦ୍ମ ! ଶଙ୍ଖ-କୋଇଲକୁ ସେ ପ୍ରାଣଭରି ଭଲପାଏ । ଶ୍ରେଷ୍ଠ ଛୁଆ । ମା'ର ଡର । ଲୁଚେଇ ଲୁଚେଇ ସେ ସେମାନଙ୍କ ସଙ୍ଗରେ ଖେଳେ । ବରି, ଏଣ୍ଡୁରି ନେଇ ଖାଏ ଏବଂ ଖୁଆଏ । ତାଙ୍କୁ ଛାଡ଼ି ସେ ରହିପାରେ ନି ।

ନିଜର ଭଉଣୀ ମାନଙ୍କୁ ସେ ଖୋଜିଲା ବହୁତ । ମା'କୁ ଖୋଜିଲା । କିନ୍ତୁ ସେତେ ନୁହେଁ । ସବୁବେଳେ ସେ ବୁଢ଼ାକୁ ପଚାରେ । ବୁଢ଼ାବାପ ବୁଝାଇ ପାରେନି ତାକୁ । ବେଳେବେଳେ ସେ ଅଧୀର ହୁଏ । ପଚାରେ "ବା··· ବା' ମ, ମୋ' ନାନୀସବୁ ଗଲେ କୁଆଡ଼େ ? ସେମାନେ କଣ ଆମ ଘରକୁ ଆଉ ଆସିବେ ନି ?"

ବୁଢ଼ା ଆଖିରୁ ଲୁହ ପୋଛେ । କହେ—"ନା, ମା···ସେମାନେ ଆସିବେନି' ଆଉ । ସେମାନେ ପରି ନଈ ହେଇ ଚାଲିଗଲେ !"

"ତମକୁ ପଚାରିଲେ ନି' ବା ! ଆଚ୍ଛା ମୋ କଥା କ'ଣ କିଛି କହିଲେ ନି'··· ? ନା···ନା··· ପଚାରି-ଥିବେ···କହିଥିବେ···! ବା'···ମୁଁ ନଈ ହେବି ବା··· ମୁଁ ନଈ ହେବି ! ସେମାନଙ୍କ ପରି ବହିଯିବି ଆଉ ସେମାନଙ୍କ ସଙ୍ଗେ ମିଶିବି··· !" ଖଣ୍ଡିଆ ଖଣ୍ଡିଆ କଥା ।

ବୁଢ଼ା ତା' ମୁହଁକୁ ଚାହେଁ ! ଆହୁରି ବିରକ୍ତ··· ଆହୁରି ଆକୁଳ ହୁଏ ସେ । ଏଇଖିଣି ତା' ଜୀବନ ଆଉ ଚାଲିଯିବ କି ?

"ଶଙ୍ଖ-କୋଇଲ··· !""ଶଙ୍ଖ-କୋଇଲ···" କହି କହି ସର ଭାତ ଛାଡ଼ିଲା । "ମୋତେ ମୋ ନାନୀଙ୍କୁ ଆଣି ଦିଅ···ନ ହେଲେ ଖାଇବିନି !' ବାହା ଧରି କାନ୍ଦିଲା !

କେତେଦିନ ଏପରି ଯିବ ? ଛୁଆ ଦିନ । ହେଲା ଜର ! ସେଇ ଶେଷ··· ! ଖାଟିରେ ତାର ସେଇ ଦୁଇଟି ନାଁ । ବୁଢ଼ା ମୁଣ୍ଡରେ ଆକାଶଟା ଭାଙ୍ଗି ପଡ଼ିଥିଲେ ସେ ଏତେ ଚମକି ପଡ଼ି ନ ଥାନ୍ତା । ସବୁ ଯାଇଥିଲେ । ଥିଲା ସର···! ତାରି ଲାଗି ସେ ବଞ୍ଚିବାଟା ନିତାନ୍ତ ଉଚିତ ବୋଲି ଭାବୁଥିଲା ।

"ଶଙ୍ଖ···କୋଇଲ···ସର···! ଶଙ୍ଖ···କୋଇଲ··· ସର···!" ବୁଢ଼ା ପାଗଳ ହୋଇ ଉଠିଲା । ମଲା ଛୁଆର ଶବଟି ନେଇ ସେ ନାଚ ଆରମ୍ଭ କଲା । ସବୁ ଯାର ଯାଏ ସେ ଏଇପରି ହୁଏ ପାଗଳ—

ହଠାତ୍ ସେ ଚାହିଁଲା ଆକାଶକୁ । ମେଘ···ମେଘ ଉପରେ ମିଶୁଛି ମେଘ ! ଦୁଇଟି ନେଳୀ ଆଲୁଅ ଧାରା ! ମିଶିଗଲା । ମେଘ ଫାଙ୍କରେ ଦେଖାଦେଲା···ଆଉ ଗୋଟିଏ । ଆଗଠୁ ସେ ଖୁବ୍ ସରୁ···ଅଥଚ ତେଜୀ-ୟାନ, ସେ ବି ମିଶିଗଲା—ଆଗ ଦି'ଟିର ସାଥିରେ । ସେଥିରେ ସେ ଦେଖି ପାରିଲା ଯେପରି ତାର ସେଇ ତିନୋଟି ଶିଶୁ ମିଶି ଏକ ହେଇଗଲେ, କାନରେ ତାର ଶୁଭିଲା, ସେଇ ତିନଟିର ହର୍ଷ କଳରବ ।

ଦେହ ତାର ଝିମ୍···ଝିମ୍ ! ମୁଣ୍ଡ ତାର ଝାଇଁ— ଝାଇଁ—! କାନ ଭାଁ ଭାଁ ! "ଏଁ···ଏଁ···ଏ ଯେ ମୋର ସର···!" କହୁଁ କହୁଁ ଶିଥିଳ ଦୁର୍ବଳ ପଦ ସ୍ଥିର ହୋଇଗଲା ! ହାତରୁ ଖସି ପଡ଼ିଲା ସରର ଶବ । ଗଛ କାଟିଲାପରି କଚାଡ଼ି ହୋଇ ପଡ଼ିଲା ଚାଷୀ ବୁଢ଼ାଟି । "ଶ·· ଙ୍ଖ···କୋ···ଇ···ଲ···ସ···ର···!" କରୁଣ ···! ଅସ୍ପଷ୍ଟ ସୁର । ମାଟି ! ଏଇ ମାଟିରେ ସେଦିନ ସେ ପଡ଼ିଥିଲା ପ୍ରଥମ ହେଇ ! ଆଉ ଆଜି ପଡ଼ିଲା ଶେଷ ଥର ପାଇଁ···! ଆଖି ବନ୍ଦ ! ଆଉ ଖୋଲିଲାନି ! ଦିହରେ ମୃତ୍ୟୁର ଶୀତଳତା !

ଆକାଶରେ ଚନ୍ଦ୍ରର ମ୍ଳାନିମା ! (ଚାଲିବ)



# ଚିକିତ୍ସା-ମାହାତ୍ମ୍ୟ

( ପୂର୍ବ ପ୍ରକାଶିତ ଉତ୍ତରୁ )

## ୪ର୍ଥ ଦୃଶ୍ୟ

( କବିରାଜଙ୍କ ଔଷଧାଳୟ, ନିଧିରାମଙ୍କ ପ୍ରବେଶ )

କବି—ଇରେ ମାର୍କଣ୍ଡିଆ, ମହିଷାସୁର ତେଲର କରେଇଟା ଓହ୍ଲାଇ ରଖ । ( ନିଧିରାମଙ୍କ ପ୍ରତି ) ବାବୁଙ୍କର କେତେବେଳେ ଆସିବା ହୋଇଛି ?

ନିଧି—ଆଜ୍ଞା, ବର୍ତ୍ତମାନ ଆସୁଛି । ମୋ ନାଁ ନିଧିରାମ ମିଶ୍ର, ଉଗରପଡ଼ାରୁ ଆସିଛି ।

କବି—ରୋଗୀର ବେରାମଟା କଣ ?

ନିଧି—ଆଜ୍ଞା, ମୁଁ ଇ ରୋଗୀ ।

କବି—ହଁ, କଣ ହେଇଛି ?

ନିଧି—ଗତ ମଙ୍ଗଳବାର ଦିନ ନର୍ଦ୍ଦମାରେ ଗୋଡ଼ ଖସିଗଲା । ବିଶେଷ କିଛି ହୋଇନାହିଁ । ତେବେ ସମସ୍ତେ କହିଲେ, ମଥାଟା ଖରାପ ହୋଇଯାଇ ପାରେ । ତେଣୁ ଡାକ୍ତରଙ୍କୁ ଦେଖାଇଲି । ସେ କହିଲେ, 'ଅପରେସନ୍ କରିବାକୁ ହେବ ।'

କବି—କଣ କହିଲା ? ମୁଣ୍ଡର ଖପୁରି କଣା କରି ଦେବ ନା କଣ ?

ନିଧି—ଆଜ୍ଞା ନା, ଗୋପାଳବାବୁ କହିଲେ ଔଷଧ ଖାଇଲେ ଭଲ ହୋଇଯିବ ତେଣୁ ଆଉ ଅପରେ-ସନ୍ କଲି ନାହିଁ ।

କବି—ଗୋପାଳ ? ସେଇଟା ପୁଣି କିଏ ?

ନିଧି—ଜାଣନ୍ତି ନାହିଁ ? ବକ୍ସିବଜାର ଡାକ୍ତର ଗୋପାଳଚନ୍ଦ୍ର ସାହୁ ଏମ୍.ଡ଼.ଏର୍., ଟି.ଏସ୍.କେ. ଜେଡ୍—ମସ୍ତ ହୋମିଓପାଥ୍ ?

କବି—ଓ, ଗୋପାଳଆ ? ତାଇ କହ । ସେଇଟା ପୁଣି ଡାକ୍ତର ହେଲା କେବେ ? ଆଚ୍ଛା, ବଜାରରେ ଏ ଭଳି ବିଚକ୍ଷଣ କବିରାଜ ଥାଉଁ ଥାଉଁ ଅନାଡ଼ିଙ୍କ ପାଖକୁ ଯାଅ କାହିଁକି ?

ନିଧି—ଆଜ୍ଞା ସମସ୍ତେ କହନ୍ତି, ଡାକ୍ତରଙ୍କ ମତଟା ଆଗ ନେଇ ତାପରେ ଯାହା କରିବ ।

କବି—ବଙ୍କୁ ବାବୁଙ୍କୁ ଚହ୍ନିଛ ? ଆଠଗଡ଼ର ବଙ୍କୁ-ବାବୁ ?

ନିଧି—ଆଜ୍ଞା ନା ।

କବି—ତାଙ୍କ ମାମୁଁଙ୍କର ହୋଇଥିଲା ଉରୁସ୍ତମ୍ଭ । ସିଭିଲ ସର୍ଜନ ପାଦ କାଟିଦେଲା । ତନନ୍ଦନ ଅଚୈତନ୍ୟ । ଚେତା ଆସିବା ମାତ୍ରେ କହିଲେ, "ମୋ ଠେଙ୍ଗା କୁଆଡ଼େ ଗଲା ? ସେ ସିଭିଲ ସର୍ଜନକୁ ଆଗ ମାଇଲେ ଯେଉଁ କଥା । ଡାକ ତାରିଣୀ କବି-ରାଜଙ୍କୁ ।" ଦେଲି ପାନେ 'ଚନ୍ଦ୍ରଣ ପ୍ରକାଶ', ଆଉ କିଛି ବୃହତ୍ ଅଟ୍ଟାଳିକା ଚୂର୍ଣ୍ଣ—ତାପରେ କଣ ହେଲା ଜାଣ ?

ନିଧି—ପୁଣି ପାଦ ଗଜୁରିଲା ବୋଧହୁଏ !

କବି—ତେବେ ? ଦିଅ ନାଡ଼ିଟା ଦେଖେଁ । (ନାଡ଼ି ଦେଖି) ହଁ, ଯାହା ଭାବିଥିଲି ସେଇୟା । ଖୁବ୍ ରୋଗରେ ପଡ଼ିଥିଲ କେବେ ?

ନିଧି—ଅନେକ ଦିନ ତଳେ ଟାଇଫଏଡ଼ ହୋଇଥିଲା ?

କବି—ଠିକ୍ ଅନୁମାନ କରିଛି । ପାଞ୍ଚବର୍ଷ ତଳେ ?

ନିଧି—ନା, ପ୍ରାୟ ଦଶ ବର୍ଷତଳେ ।

କବି—ଏକଇ କଥା – ପାଞ୍ଚର ଦୁଇଗୁଣ ଦଶ । ସକାଳେ ବାନ୍ତି ହୁଏ ?

ନିଧି—ଆଜ୍ଞା ନା ।

କବି—ହୁଏ, ଜାଣିପାର ନାଇଁ । ନିଦ ହୁଏ ?

ନିଧି—ଭଲ ହୁଏ ନାହିଁ ।

କବି—ହବ ନାଇଁ ତ । ଉର୍ଦ୍ଧ୍ୱ ଶ୍ଳେଷ ଅଛି କି ନା । ଦାନ୍ତ କଟକଟ କରେ ?

ନିଧି—ଆଜ୍ଞା ନା ।

କବି—କରେ, ଜାଣି ପାର ନାହିଁ । ଯା ହେଉ ଭୟ କରନା । ମୁଁ ଔଷଧ ଦେଉଛି । (ଔଷଧ ଶିଶିକୁ ହଲାଇ, ଗୃହିଁ) ଡେଁ ନା ଡେଁ ନା ସେମିତ—ରହ ରହ—ମୋର ସବୁ ଜାଅନ୍ତା ଔଷଧ କ ନା—ଡାକଲେ କଥା କହନ୍ତି । ଏହି ବଟିକା—ଆହା ! ଗବ୍ୟଜାବ ବଟିକା, ବୁଝିଲ ? ସକାଳ ସନ୍ଧ୍ୟାରେ ଗୋଟିଏ ଲେଖାଏଁ ଖାଇବ । ଆହା ! ଚରକରେ କଣ ଲେଖାଅଛି ଜାଣ ? ଏହାକୁ ଖାଇ ମୃତ୍ୟୁ ହେଲେ ବ ସ୍ୱର୍ଗଲାଭ । ନରକର ଭୟ ରହେନାହିଁ । ଆରେ କଣ୍ଡୁରିଆ ! ତେଲଟା ଆଣ ତ । (କଣ୍ଡୁରିଆ ତେଲ ଆଣି ଖୁବ୍ ଜୋରରେ ନଧି-ରାମଙ୍କ ମୁଣ୍ଡବାଳକୁ ଧରି ମଥାରେ ଘଷିବା—ମୁହଁରେ ନେଡ଼ ଲଗାଇ ରଗଡ଼ି ଘଷିଦେବା)

ନଧି—(ଯନ୍ତ୍ରଣାରେ ଅଧୀର ହୋଇ) ଆଲୋ ମରଗଲି ଲୋ ବାପା—ଆହେ ଗୁଡ଼—ଉଃ—ମଲି ଲୋ ବୋଉ—ଆହା-ହା—......

କଣ୍ଡୁ—(ଆହୁରି ଜୋରରେ ଘଷି) କହେ, ଘଷା ଆରମ୍ଭ ହେଉ ହେଉ ଏମନ୍ତ କଣ ହେଉଛ ? ଏମିତ ଗୁନିଆ ମଣିଷ ତ ମୁଁ କେଉଁଠି ଦେଖି ନାହିଁ । (ପୁଣି ଜୋରରେ ଘଷିବା ଓ ନଧି ପୁଣି ଚିତ୍କାର କରିବା) ।

ନଧି—ହୋ କଣ୍ଡୁରି—ହେ କଣ୍ଡୁରି—ଆରେ ବାବା କଣ୍ଡୁ—ଆବେ କଣ୍ଡୁରିଆ, ଆରେ ଗୁଡ଼, ମୁଁ ଭଲ ହୋଇଗଲିଣି । କବିରାଜବାବୁ, ମୁଁ ଭଲ ହୋଇ ଗଲିଣି । ଏ କଣ୍ଡୁରିଆକୁ ଟିକିଏ ମନା-କର ଭଲା । ଓହୋ—(ସକେଇ ସକେଇ) ମଲି ଲୋ ବୋଉ !

କବି—ଭଲ ଲାଗିଲାଣି ?

ନଧି—ଆଜ୍ଞା ହଁ...ଉଃ, ଆରେ କଣ୍ଡୁରିଆ ରହ ଭଲା ।

କବି—ଥାଉ ରେ ! (କଣ୍ଡୁରି ଘଷା ବନ୍ଦ କରିବା)—(ରୋଗୀକୁ ଗୃହିଁ) ସମ୍ପୂର୍ଣ୍ଣ ଭଲ ଲାଗୁଛି ତ ?

ନଧି—ଆଉ ପଚାରୁଛନ୍ତି ? ମୁଁ ଏକେବାରେ ଆରୋଗ୍ୟ ହୋଇ ଗଲିଣି । ମୋର ତ ମନେ ହେଉଛି ସାତ ଜନ୍ମଯାକେ ଆଉ ମୋର ଏ ରୋଗ ହେବନାହିଁ । ଆଜ୍ଞା ଥାଆନ୍ତୁ ମୁଁ ଯାଉଛି । ମୁଁ ଭଲ ହୋଇ ଗଲିଣି ।

କବି—କଣ ଆମ ଔଷଧ ଖର୍ଚ୍ଚାଟା ଦେବ ନାହିଁ ନା କଣ ?

ନଧି—ସ୍ୱା ନା କଥା ? କେତେ ଦେବ କହନ୍ତୁ !

କବି—ମୋଟେ ତେର ସୁଡ଼କା ପଇସା ।
(ନଧି ପଇସା ଦେବା) ଦେଖ ବାବା, ଆଉ କେବେ ଦେହ ପା' ହେଲେ ସେ ଡାକ୍ତର ଫାକ୍ତରଙ୍କୁ ନ ଦେଖାଇ ସିଧା ଏଇଠିକି ଗୃଲି ଆସିବ । ମଲା-ଲୋକ ବଞ୍ଚୁଛି ଏଠି, ବୁଝିଲ ?

ନଧି—ଆଜ୍ଞା ସବୁ ବୁଝିଲି ।

(କବିରାଜ ଓ କଣ୍ଡୁରିଙ୍କ ପ୍ରସ୍ଥାନ)

(ସ୍ୱଗତଃ) ଆଉ ପୁଣି ରୋଗ ? ଆରେ ବାପ୍‌ରେ ବାପ୍ !

—o—

## ମିଳିତ ଜାତିସଂଘର ପ୍ରଧାନ କାର୍ଯ୍ୟାଳୟ

ଶ୍ରୀ ମୋହନମୁରାରି ବାରିକ

ଅକ୍ଟୋବର ୨୪ କୁ ମିଳିତ ଜାତିସଂଘ ଦିବସ ବୋଲି ପୃଥିବୀର ସବୁଦେଶ ମାନନ୍ତି । ୯ ବର୍ଷ ତଳେ ଏଇ ଦିନ ମିଳିତ ଜାତିସଂଘର ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା ।

୪ବର୍ଷ ଆଗେ ଅକ୍ଟୋବର ୨୪ରେ ୧୯୪୯ରେ ଜାତିସଂଘ ଜେନେରାଲ୍ ଆସେମ୍ବ୍ଲିର ଭିତ୍ତି ସ୍ଥାପନ କରା ଯାଇଥିଲା । ଏ ଦିନ ଜାତିସଂଘର ୨୩୭ତମ ଅଧି-ବେଶନ ହୋଇଥିଲା ।

ଜାତିସଂଘର ହେଡ୍‌କ୍ୱାର୍ଟର୍‌ସ—ନିଉୟର୍କର ପୂର୍ବ-ନଦୀ (East river) ପାଖରେ ୧୮ ଏକର ଜମି ଅଧିକାର କରିଛି । ଏହା ଜାତିସଂଘର ଅଧୀନରେ ଅଛି ଏବଂ ଆନ୍ତର୍ଜାତୀୟ ଟେରିଟୋରୀର ଅନ୍ତର୍ଗତ । ଏଥିପାଇଁ ୧୨ଟି ଦେଶର ପ୍ରଧାନ ପ୍ରଧାନ ସ୍ଥପତିମାନେ ୫୦ଟି ମୌଳିକ ଯୋଜନା ଏବଂ ୧୦୦ଟି ସେକେଣ୍ଡାରୀ ଡିଜାଇନ ଦେଇଥିଲେ ।




## ବାଦୁଡ଼ିମାନେ ଅନ୍ଧାରରେ କିପରି ଦେଖନ୍ତି ?

ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ବେବର୍ତ୍ତା ।

ବାଦୁଡ଼ିମାନଙ୍କ ଆଖିଗୁଡ଼ିକ ଭଲଭାବରେ ବିକାଶ-ପ୍ରାପ୍ତ ହୋଇ ନ ଥାଏ । ସୁତରାଂ ସେମାନଙ୍କର ଦୃଷ୍ଟିଶକ୍ତି ଅତି ନିମ୍ନ ଧରଣର ଅଟେ । ସେମାନେ ଦିନରେ ତ ଦେଖି ପାରନ୍ତି ନାହିଁ, ଏପରିକି ରାତି ସମୟରେ ବି କୌଣସି ଜିନିଷ ଆଖି ଦ୍ୱାରା କେବେ ଦେଖି ପାରନ୍ତି ନାହିଁ । ସୁତରାଂ ଅନ୍ଧାର ରାତିରେ ସେମାନଙ୍କୁ ବାଟ ଦେଖାଏ ସେମାନଙ୍କର ବଡ଼ ବଡ଼ କାନ ଦୁଇଟି ମାତ୍ର ।

ଆମ୍ଭେମାନେ ଅନେକ ପ୍ରକାର ଧ୍ୱନି ଶୁଣିବାକୁ ପାଉଁ । ଆମର ଧାରଣା ଯେ ସବୁପ୍ରକାର ଧ୍ୱନି ଏହି କାନଦ୍ୱାରା ଶୁଣି ପାରୁ । କିନ୍ତୁ ପାଠକମାନେ ଶୁଣି ଆଶ୍ଚର୍ଯ୍ୟ ହେବେ ଯେ, ଆହୁରି ଏକପ୍ରକାର ଧ୍ୱନି ଅଛି, ଯାହା କି ଆମ୍ଭେମାନେ ମୋଟେ ଶୁଣିପାରୁ ନାହୁଁ । ତାହାକୁ "ମହାଧ୍ୱନି" (Supersonic note) ବୋଲି କହନ୍ତି । ବିଜ୍ଞାନ ନିର୍ମିତ ଯନ୍ତ୍ରଦ୍ୱାରା ଏହି ଧ୍ୱନି ଶୁଣା ଯାଇପାରେ । ପ୍ରାଣୀ ଜଗତରେ ଅଳ୍ପ କେତେ ପ୍ରାଣୀ ମାତ୍ର ଏହି ଧ୍ୱନି ଶୁଣିବାକୁ ସୁବିଧା ପାଇଥାନ୍ତି । ସେମାନେ ହେଉଛନ୍ତି ବାଦୁଡ଼ି, ମହୁମାଛି ଇତ୍ୟାଦି । ଏହି ମହାଧ୍ୱନି ଶୁଣିବା ପ୍ରଣାଳୀକୁ ଇଂରେଜୀରେ 'Stereophonic hearing' ବୋଲି କହନ୍ତି । ବାଦୁଡ଼ି ଏହି ମହାଧ୍ୱନି ଶୁଣିବାରେ ବିଶେଷ ପଟୁ ଅଟେ । ଏହି ମହାଧ୍ୱନିହିଁ ବାଦୁଡ଼ିମାନଙ୍କ ପଥ ପ୍ରଦର୍ଶକ ଅଟେ ।

ବାଦୁଡ଼ିମାନେ ଉଡୁଥିବା ସମୟରେ ଏକ ପ୍ରକାର ଚିତ୍କାର କରୁଥିବା କେତେକ ଶୁଣିଥିବେ । ଏହି ଚିତ୍କାର ସ୍ୱର ସମୟେ ସମୟେ ଏତେ ଉଚ୍ଚ ହୋଇ ଉଠେ ଯେ

---

ଏହା ଭିତରକୁ ଦର୍ଶକ ସାଧାରଣ ଗେଟ୍ ଦେଇ ଗଲାବେଳେ ନିକେଲ୍-ବ୍ରୋଞ୍ଜର ସାତୋଟି କବାଟ ଥିବା ଗୋଟିଏ ବାଟରେ ଯିବେ । ଏହା କାନାଡ଼ା ସରକାରଙ୍କ ଦାନ । ଆସେମ୍ବ୍ଲି ଗୃହରେ ପ୍ରତିନିଧିଙ୍କ ପାଇଁ ୨୭୦ଟି ସିଟ୍ ଅଛି । ନିରୀକ୍ଷକ (observer) ମାନଙ୍କପାଇଁ ୨୭୦, ସାମ୍ବାଦିକମାନଙ୍କ ପାଇଁ ୨୩୪ ଏବଂ ୮୦୦ଟି ସିଟ୍ ପରିଦର୍ଶକ (visitor) ମାନଙ୍କ ପାଇଁ ବନ୍ଦୋବସ୍ତ କରା ଯାଇଛି । ସେକ୍ରେଟେରିଏଟ୍—୭୩ ଫୁଟ ଓସାର, ୨୮୭ ଫୁଟ ଲମ୍ବ । ଏଥିରେ ୧୯୫୦ରେ ୭୦୦ କର୍ମଚାରୀଙ୍କ ପାଇଁ ସୁବିଧା କରାଯାଇଥିଲା । ୧୯୫୧ ଜୁନ ସୁଦ୍ଧା ପ୍ରାୟ ୩୫୦୦ କର୍ମଚାରୀ ଏଥିରେ କାମ କରୁଛନ୍ତି ।

ପ୍ରତିଦିନ ପ୍ରାୟ ୧୨ ହଜାର ଲୋକ ଏଇ ହେଡ୍‌କ୍ୱାଟର୍‌ସରେ ଗତାଗତ ହୁଅନ୍ତି । ଏଠାରେ ୨୦,୦୦,୦୦୦ ବର୍ଗଫୁଟ ଯାଗା ପ୍ରତିଦିନ ଝାଡ଼ୁ କରାଯାଏ । ୩ ଫୁଟ ଓସାର ଏବଂ ୧୫ ମାଇଲ ଲମ୍ବ କାର୍ପେଟ୍ ଲାଗେ । ପ୍ରାୟ ୭,୩୩୩ ଗଜ ପରଦା ପଡ଼େ । ୬ହଜାର ଭେନିସିଏନ୍ ବ୍ଲାଇଣ୍ଡ୍ ଟଙ୍ଗା ଯାଇଥାଏ, ଏବଂ କେବଳ ୬୦୦୦ ଚଉକି ବ୍ୟବହୃତ ହୋଇଥାଏ । ସେକ୍ରେଟେରିଏଟ୍ ବିଲଡିଙ୍ଗ୍‌ରେ ୫୪୦୦ଟି ଏବଂ ହେଡ୍‌କ୍ୱାଟରସ ମଧ୍ୟରେ ୬,୬୦୦ଟି ଝରକା ଅଛି । ଏ ସବୁକୁ ୧୪ଜଣ ଝାଡ଼ୁଦାର ସାରାଦିନ ଲାଗି ସଫା କରନ୍ତି । ଏହାଛଡ଼ା ବାହାରେ ପଡ଼ିଆ, ବଗିଚା ଆଦି ପ୍ରାୟ ୭ ଏକର ଜମିର ଯତ୍ନ ନେବାକୁ ହୁଏ । ସମୁଦାୟ ଘରର ଯତ୍ନ ନେବାଲାଗି ପ୍ରାୟ ୩୩୫ ଜଣ ଲୋକ ନିଯୁକ୍ତ ଅଛନ୍ତି ।

( ସଂଗୃହୀତ )

କେତେକଙ୍କୁ ଏହି ଧ୍ୱନି ମୋଟେ ଶୁଣାଯାଏ ନାହିଁ । ଯେଉଁ ଧ୍ୱନି ପ୍ରତି ସେକେଣ୍ଡରେ ଷୋଳଠାରୁ ତିରିଶି ହଜାର (୩୦,୦୦୦) ଥର ଆନ୍ଦୋଳିତ ହୋଇ ଉଠେ, ସେହି ଧ୍ୱନିକୁ ଆମ୍ଭେମାନେ ସାଧାରଣତଃ ଶୁଣିଥାଉଁ । ଆଉ କେତେକ ଲୋକ ଅଛନ୍ତି, ସେମାନେ ପ୍ରତି ସେକେଣ୍ଡରେ ୪୦,୦୦୦ ଥର ଆନ୍ଦୋଳିତ ହେବା ଶବ୍ଦକୁ ଶୁଣି ପାରନ୍ତି । କିନ୍ତୁ ବାଦୁଡ଼ିମାନେ ଯେଉଁ 'ମହାଧ୍ୱନି'କୁ ଶୁଣିଥାନ୍ତି, ସେହି ମହାଧ୍ୱନି ପ୍ରତି ସେକେଣ୍ଡରେ ୫୦,୦୦୦ ଥର ଆନ୍ଦୋଳିତ ହୋଇଥାଏ । ବାଦୁଡ଼ି ସ୍ଥିର ଥିଲା ସମୟରେ ଏହିପରି ଚିତ୍କାର ପ୍ରତି ସେକେଣ୍ଡରେ ପ୍ରାୟ ଦଶଥର କରେ । ସେହି ଶବ୍ଦ-ଗୁଡ଼ିକର ଯେଉଁ ପ୍ରତିଧ୍ୱନି ଆସେ, ସେହି ହେଉଛି ବାଦୁଡ଼ିର ଦିଗଦର୍ଶକ ।

ସମୁଦ୍ରର ଗଭୀରତା ଜାଣିବା ପାଇଁ, ମହାଧ୍ୱନିର ବ୍ୟବହାର ବୋଧହୁଏ ଅନେକ ଶୁଣିଥିବେ । ଜାହାଜରୁ ଶବ୍ଦତରଙ୍ଗ ସମୁଦ୍ର ଭିତରକୁ ପଠାଯାଏ । ସମୁଦ୍ର ତଳରୁ ପ୍ରତିଧ୍ୱନି ଆସିବାକୁ ଯେତେ ସମୟ ଲାଗେ, ସେଥିରୁ ସମୁଦ୍ରର ଗଭୀରତା ଜଣାଯାଏ । ଠିକ ସେହି-ପରି ବାଦୁଡ଼ିମାନେ ମହାଧ୍ୱନିବିଶିଷ୍ଟ ଚିତ୍କାର କରନ୍ତି । ସେହି ଚିତ୍କାରର ପ୍ରତିଧ୍ୱନି ତାହାଙ୍କ କାନ ନିକଟକୁ ଆସିବାକୁ ଯେତେ ସମୟ ଲାଗିବ, ସେଥିରୁ ସେମାନେ କେତେ ଦୂରରେ କେଉଁ ଜିନିଷ ଅଛି ସହଜରେ ଜାଣି ପାରନ୍ତି ।

ଏକା ସାଥିରେ ଅନେକ ବାଦୁଡି ଅନ୍ଧକାରରେ ଉଡ଼ି ଉଡ଼ି କୀଟପତଙ୍ଗ ଖାଇବାର ଅନେକ ଦେଖି-ଥିବେ । କିନ୍ତୁ କିଏ କାହା ସହିତ ସଂଘର୍ଷ ହୁଅନ୍ତି ନାହିଁ । ଏହାର କାରଣ କଣ—ଅନେକଙ୍କ ମନରେ ବୋଧହୁଏ ପ୍ରଶ୍ନ ଉଠିପାରେ । ତାହାର କାରଣ ହେଉଛି, ବାଦୁଡ଼ି-ମାନଙ୍କ ଚିତ୍କାର ପାଞ୍ଚଗଜ ଠାରୁ ଅଧିକ ଦୂର ଯାଏ ନାହିଁ । ସୁତରାଂ ବାଦୁଡ଼ିମାନେ ହଠାତ୍ ଦିଗ ପରି-ବର୍ତ୍ତନ କରି, ପରସ୍ପର ବିନା ସଂଘର୍ଷରେ ଉଡ଼ିପିବାର ଦେଖାଯାଏ । ଆଉ ଏକ କାରଣ ହେଉଛି, ବାଦୁଡ଼ି-ମାନଙ୍କ ସ୍ୱରରେ ନିଜସ୍ୱ ଅଛି-ଅର୍ଥାତ୍ ସେମାନେ ନିଜ ନିଜର ସ୍ୱର ଓ ତାହାର ପ୍ରତିଧ୍ୱନି ସହଜରେ ଜାଣି ପାରନ୍ତି ।

ଆଉ କେତେକ ରକମର ବାଦୁଡ଼ି ଅଛନ୍ତି, ସେମାନଙ୍କ ନାକରନ୍ଧ୍ରର ଚତୁର୍ଦ୍ଦିଗରେ ଏକପ୍ରକାର ତରଙ୍ଗାୟିତ ଚମଡ଼ା ଦ୍ୱାରା ଆବୃତ ହୋଇଥାଏ । ଏମାନଙ୍କ କାନଗୁଡ଼ିକ ଖୁବ୍ ଲମ୍ବା ଲମ୍ବା ଅଟେ । ଏମାନେ ପାଟିବାଟେ ଶବ୍ଦ ସୃଷ୍ଟି ନ କରି, ନାକବାଟେ ଶବ୍ଦ ସୃଷ୍ଟି କରନ୍ତି । ତଦ୍ୱାରା ବହୁତ ଦୂରରେ ଥିବା ପଦାର୍ଥଗୁଡ଼ିକୁ ବି ଏମାନେ ସହଜରେ ଜାଣି ପାରନ୍ତି ।

ବାଦୁଡ଼ିମାନେ ଉଡୁଥିବା ସମୟରେ କୌଣସି ପ୍ରତିବନ୍ଧକର ହାବୁଡ଼ରେ ଯଦି ଆସି ପଡ଼ନ୍ତି, ତେବେ ସେମାନଙ୍କର ଶବ୍ଦ ସୃଷ୍ଟି କରିବା ଶକ୍ତି ବଢ଼ିଯାଏ । ସେମାନେ ପ୍ରତି ସେକେଣ୍ଡରେ ଦଶ ଠାରୁ ପଚିଶ ଥର ଯାଏ ଶବ୍ଦ ସୃଷ୍ଟି କରନ୍ତି । ତଦ୍ୱାରା ସେମାନେ ଅତି ଜଲଦି ଓ ସହଜରେ ସେ ପ୍ରତିବନ୍ଧକର ସନ୍ଧାନ ପାଇ ପାରନ୍ତି । ନିଜ ନିଜ ବସା ଖୋଜୁଥିବା ସମୟରେ ସେମାନେ ପ୍ରତି ସେକେଣ୍ଡରେ ୧୦୦ ଥର ମହାଧ୍ୱନି ସୃଷ୍ଟି କରିଥାନ୍ତି । କ୍ରମେ ସେମାନେ କାନ୍ଥ କମ୍ବା ସ୍ତମ୍ଭ ନିକଟକୁ ଆସି, ପ୍ରତିଧ୍ୱନିଦ୍ୱାରା ସେହି ପଦାର୍ଥକୁ ସହଜରେ ଜାଣିପାରନ୍ତି । ତାପରେ ସେମାନେ ନିଜ ରହିବା ସ୍ଥାନକୁ ଠିକ୍ କରି, ସେହି ଅନ୍ଧାର କୋଠରୀର ଚତୁର୍ଦ୍ଦିଗେ କେତେଥର ଘୂରିସାରି, ନିଜ ସ୍ଥାନରେ ଆସି ଓହଳି ଯାଆନ୍ତି । ସେମାନଙ୍କର ଏହି ଇନ୍ଦ୍ରିୟ ଶକ୍ତି ଏତେ ତୀକ୍ଷ୍ଣ ଯେ, ଏପରିକି କାନ୍ଥ କମ୍ବା ସ୍ତମ୍ଭରେ କେଉଁଠି ଫାଙ୍କ ଅଛି, ତାହା ସେମାନେ ଅତି ସହଜରେ ଜାଣି ପାରନ୍ତି ।



# ଚିଲିକା ଦ୍ୱୀପବାସୀଙ୍କ ଶିକ୍ଷା ଓ ସଭ୍ୟତା

ଡାକ୍ତର ଶ୍ରୀ ରାଧାଚରଣ ପଣ୍ଡା

ପାରିକୁଦ, ମାଲୁଦ ଓ ବଜ୍ରକୋଟ ଏ ତିନି ପ୍ରଗଣା ମିଶି ଚିଲିକାର ଦ୍ୱୀପପୁଞ୍ଜ ହୋଇଛି । ଏ ତିନି ପ୍ରଗଣାର କ୍ଷେତ୍ରଫଳ ୧୦୦ ବର୍ଗ ମାଇଲ ଏବଂ ଏଠାରେ ୧୮ ହଜାର ଲୋକ ବାସ କରନ୍ତି । ଏଥିରୁ କେଉଟ, କଣ୍ଡରା, ଖଟିଆ, ତିଅର ଓ କାରେଟିଆ ପ୍ରଭୃତି ପ୍ରାୟ ୨ହଜାର ମତ୍ସ୍ୟଜୀବୀ ଏ ଅଞ୍ଚଳର ଆଦିବାସୀ ଅଟନ୍ତି ଏବଂ ଅନ୍ୟ ୧୬ ହଜାର ଅଧିବାସୀଙ୍କ ମଧ୍ୟରୁ ପୁରୁଣା 'ପାଏକ' ଜାତିର ଲୋକ ସଂଖ୍ୟାପ୍ରାୟ ୧୦ ହଜାର ହେବ । ଅନ୍ୟ ଛ ହଜାରରୁ ବ୍ରାହ୍ମଣ ୨ ହଜାର, କରଣ ୧ ହଜାର ଓ ପ୍ରାୟ ତିନିହଜାର ପାଠକ ଜାତିର ଲୋକ-ଗଉଡ଼, ବଢେଇ, କମାର, ଗୁଡିଆ, କୁମ୍ଭାର, ଭଣ୍ଡାରି, ଧୋବା, ହାଡ଼ି ଓ ବାଉରି ପ୍ରଭୃତି ଅଟନ୍ତି । ପ୍ରାୟ ଶହେ ପଠାଣ ମଧ୍ୟ ମାଳୁଦ ଅଞ୍ଚଳରେ ଅଛନ୍ତି । ଏମାନଙ୍କୁ ନେଇ ଏ ଦ୍ୱୀପପୁଂଜର ଜନସଂଖ୍ୟା ଗଢ଼ା ଯାଇଛି । ଆଦିବାସୀ ମତ୍ସ୍ୟଜୀବୀମାନେ ଅତି ଆଦିମ କାଳରୁ ଏଠାରେ ରହି ଚିଲିକାରୁ ମାଛ ମାରି ଖାଇ ଚଳୁଛନ୍ତି । ମାତ୍ର ଅନ୍ୟ ସବୁ ଜାତିର ଲୋକମାନେ ଗତ ୧୭୫ ବର୍ଷ ହେଲା ଏ ଅଞ୍ଚଳରେ ରହିଛନ୍ତି । ପାରିକୁଦର ଜଣେ ରାଜା ହରିସେବକ ମାନସିଂହ ବାଣପୁର ଅଞ୍ଚଳରୁ ଆସି ଚିଲିକା ଦ୍ୱୀପପୁଂଜର ଗୁରୁବାଇଠାରେ ପ୍ରଥମେ ରହିବାରୁ ସେଇ ରାଜାଙ୍କ ଅନୁସରଣିଆ ସବୁ ଆସି ଏ ଅଞ୍ଚଳରେ ବାସ ହୋଇ ରହିଲେ, କ୍ରମେ ସେମାନଙ୍କର ସଂଖ୍ୟା ବୃଦ୍ଧି ହେଉଛି ।

ଦୀର୍ଘ ୧୭୫ ବର୍ଷ ମଧ୍ୟରେ ସ୍ଥାନୀୟ ଅଧିବାସୀମାନେ ବହୁତ ଆପଦରୁ ଉଦ୍ଧାର ପାଇଛନ୍ତି । ପ୍ରକୃତି ଏମାନଙ୍କ ବିରୁଦ୍ଧରେ ବହୁତ କାମ କରିଥିଲା । ଏ ଦ୍ୱୀପପୁଞ୍ଜ-ଗୁଡ଼ିକ ଚିଲିକା ପାଣିଦ୍ୱାରା ସବୁବେଳେ ବୁଡ଼ି ରହୁଥିଲା । ଏଠା ଭୂମି ଅତି ସମତଳ ଓ ଚିଲିକା ବୃଦ୍ଧି ପାଣିର ପତନରୁ ନିମ୍ନରେ ଥିବାରୁ ବର୍ଷାଦିନରେ ବଢ଼ିପାଣି ସବୁ ଭୂଭାଗରେ ମାଡ଼ିଯାଉଥାଏ । ଏଣୁ ସେଠାରେ ରହିବା ସୁବିଧା ହେଉ ନ ଥିଲା । ଏ ଅସୁବିଧାରୁ ବଞ୍ଚିତ ହେବାପାଇଁ ଲୋକମାନେ ବହୁତ ଉପାୟ ପାଞ୍ଚ ପାଞ୍ଚି ଶେଷରେ ଟାପୁର ଚତୁର୍ଦ୍ଦିଗରେ ମାଟି ବନ୍ଧ ବାନ୍ଧିଲେ । ଏଇ ବନ୍ଧ ମଝିରେ ଯେଉଁ ଟାପୁ ଖଣ୍ଡିଏ ରହିଥିଲା ତାହା ଏକ ଏକ କୁଦ ହେଲା । କ୍ରମେ ଅନେକ କୁଦ ଏପରି ହେବାରୁ ଏଠାର ବଡ଼ କୁଦକୁ 'ପାରିକୁଦ' କୁହାଗଲା । ଚିଲିକା ପାରି ହେଲାପରେ ଯେଉଁ କୁଦ ଦେଖାଯାଏ ତାହାକୁ 'ପାରିକୁଦ' କହିଲେ । ଏସବୁ ଅଞ୍ଚଳର ଅତି ପ୍ରଧାନ ସମସ୍ୟା ମଧ୍ୟରୁ ଏଇ ଚିଲିକା ବନ୍ୟା ସମସ୍ୟା ଏକ ବଡ଼ ସମସ୍ୟା । ଚିଲିକାରେ ଅତି ବଢ଼ି ହେଲେ ସେଇ ପାଣି ସବୁ ଦ୍ୱୀପ ଭିତରକୁ ଚାଲିଯାଏ । ସେଠାର ଫସଲ, ଘର ସମ୍ପତ୍ତି ସବୁ ନଷ୍ଟ କରେ । ଗାଈ ଗୋରୁ ମରିଯାନ୍ତି । ଦୁର୍ଭିକ୍ଷ ପଡ଼େ । ଲୋକମାନେ କଷ୍ଟ ପାନ୍ତି ।

ଲୋକେ ବନ୍ଧ ବାନ୍ଧି କୁଦ ତିଆରି କଲାପରେ ସେଇ କୁଦରେ ଚାଷ ଜମିସବୁ ତିଆରି କଲେ ଏବଂ ପ୍ରତିବର୍ଷ ଏହାର ଉନ୍ନତି କରି କ୍ରମେ ଏଠା କ୍ଷେତ୍ରଫଳ ମଧ୍ୟ ବୃଦ୍ଧି କଲେ । ଏସବୁ ଦିଗରେ କାମ କରି କରି ଏଠା ଲୋକମାନେ ନିଜର ସମସ୍ତ ବୁଦ୍ଧି ବିଦ୍ୟା ଖଟାଇଥିଲେ ।

ଏ ସବୁ ଅଞ୍ଚଳ ଆଗେ ରଜା ରାଜୁଡ଼ା ଇଲାକା ଥିଲା । ସେ ସମୟରେ ସେଇ ରଜା ଓ ଜମିଦାରମାନେ ଏ ଅଞ୍ଚଳର କୌଣସି ଉନ୍ନତି ପାଇଁ କିଛି କରୁ ନ ଥିଲେ । କେବଳ ପାରିକୁଦରେ ଗୋଟିଏ ମାତ୍ର ମାଇନର ସ୍କୁଲ ଥିଲା । ଅନ୍ୟସବୁ ଗାଁ ଗୁଡ଼ିକ ପାଇଁ ୮।୯ ଟି ପ୍ରାଇମେରୀ ସ୍କୁଲ ଥିଲା, ସେଥିରେ ପିଲାମାନେ ଢୁଳୁଢୁଳୁ ହୋଇ ପଢ଼ା କରୁଥିଲେ । ଘଣ୍ଟା ଲଗିଲାବେଳେ ଯେପରି ମିଞ୍ଜି ମିଞ୍ଜି ହେଉଥାଏ ଠିକ୍ ସେଇପରି ଏସବୁ ଅନୁଷ୍ଠାନଗୁଡ଼ିକ ଚଳୁଥିଲା । ସେଇ କାରଣରୁ ଏଠା ଅଧିବାସୀଙ୍କର ବିଶେଷ ଉନ୍ନତି ହୋଇ ପାରି ନ ଥିଲା ।

'ପଙ୍କରୁ ପଦ୍ମ ଫୁଟେ' ଅତି ମଇଳା ହେଲେ ମଧ୍ୟ ପଙ୍କରୁହିଁ ପଦ୍ମ ଫୁଟେ । ଠିକ୍ ସେଇ ମତରେ ଚିଲିକାର ଦ୍ୱୀପପୁଞ୍ଜଗୁଡ଼ିକ ଅତି ଅନୁନ୍ନତ ଓ ଏକପ୍ରକାର 'ସୃଷ୍ଟି-ଛଡ଼ା' ଅଞ୍ଚଳ ହୋଇଥିଲେହେଁ ଗତ ଶହେ ବର୍ଷର ଇତିହାସ ଖୋଜିଲେ ସ୍ପଷ୍ଟ ଜଣାଯାଏ ଯେ, ସବୁପ୍ରକାର ପ୍ରାକୃତିକ ଓ ଜମିଦାରିଆ ବାଧା ସତ୍ତ୍ୱେ ଏ ଅନୁନ୍ନତ ରାଜ୍ୟରୁ ମଧ୍ୟ କେତେଜଣ ଭଲ ପାଠୁଆ ବାହାରିଥିଲେ ଏବଂ ସେମାନେ ଓଡ଼ିଶାର ଶିକ୍ଷା ଓ ଶାସନ ବିଭାଗରେ ଅତି ସମ୍ମାନର ସ୍ଥାନ ଅଧିକାର କଲେ । ଏମାନଙ୍କ ମଧ୍ୟରୁ ଶ୍ରୀ ପରଶୁରାମ ବର୍ମା ବି. ଏ. ବି.ଟି, ଶ୍ରୀ ଉଦୟନାଥ ରଥ, ଡାକ୍ତର ମାୟାଧର ମାନସିଂହ, ଶ୍ରୀ ସଦାନନ୍ଦ ନାୟକ, ଡାକ୍ତର ରାଧାନାଥ ରଥ, ଶ୍ରୀ ଦୁର୍ଗାଚରଣ ଦାସ, ଅଧ୍ୟାପକ ପୁରୁଷୋତ୍ତମ ରଥ ଓ ଶ୍ରୀ ବନମାଳି ରଥ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ପ୍ରାୟ ୧୦୦ ବର୍ଗମାଇଲରେ ବାସ କରୁଥିବା ୧୮ ହଜାର ଲୋକଙ୍କ ମଧ୍ୟରୁ କେବଳ ଅତି ମୁଷ୍ଟିମେୟ ଲୋକ ଉଚ୍ଚଶିକ୍ଷା ପାଇଥିଲେ ସୁଦ୍ଧା ଏ ଅଞ୍ଚଳଗୁଡ଼ିକୁ ସୁଶ୍ରୀ କରିବା ଭଳି ଉଦ୍ୟମ ଏ ଯାଏ କରାଯାଇ ନାହିଁ । ଏହାର ପ୍ରଧାନ କାରଣ ଏ ଅଞ୍ଚଳଗୁଡ଼ିକ ଚିଲିକା-ମଧ୍ୟରେ ରହିଛି । ସେଠାକୁ ଯା ଆସ କରିବାର ସୁବିଧା ରାସ୍ତା ନାହିଁ ଏବଂ ଏ ଅଞ୍ଚଳ ଗୁଡ଼ିକ ଜମିଦାରୀ-ଇଲାକାରେ ଥିଲା ବୋଲି ସରକାର ବିଶେଷ କିଛି କରି ପାରୁ ନ ଥିଲେ । ଏ ସବୁ କାରଣରୁ ଚିଲିକା ଦ୍ୱୀପପୁଞ୍ଜ-ବାସୀ ଶିକ୍ଷା ଓ ସଭ୍ୟତାର ବହୁ ପଛରେ ପଡ଼ିବା ସଙ୍ଗେ ସଙ୍ଗେ ବ୍ୟବସାୟ ଓ ବାଣିଜ୍ୟ ଦିଗରେ ମଧ୍ୟ ଅଧିକ ଉନ୍ନତି କରିପାରି ନାହାନ୍ତି ! ଏକ୍ଷଣି ସମଗ୍ର ଚିଲିକା ଓଡ଼ିଶା ସରକାରଙ୍କ ନିଜ ସମ୍ପତ୍ତି ହେଲାଣି । ଚିଲିକା ଦ୍ୱୀପପୁଞ୍ଜରେ ଏକ ଆଂଚଳିକ ଶାସନ ବସିଲାଣି । ଜଣେ ଡିପୋଟି ଏଠା ପାରିକୁଦରେ ବସି ଅଞ୍ଚଳ କଥା ବୁଝିବେ । ସେ ଦ୍ୱୀପପୁଞ୍ଜର ସବୁ ଯାଗା ଦେଖି ସ୍ଥାନୀୟ ଲୋକମାନଙ୍କର ଶିକ୍ଷା କିପରି ଉନ୍ନତ ହେବ ଏବଂ ଏମାନେ କିପରି ବ୍ୟବସାୟ ବାଣିଜ୍ୟରେ ଉନ୍ନତି କରିବେ ଏ ସବୁ ଦିଗରେ କାର୍ଯ୍ୟ କରିବେ ।

ପ୍ରଥମ ପାଞ୍ଚବର୍ଷିଆ ଯୋଜନାରେ ସରକାର ଏ ଅଞ୍ଚଳପାଇଁ ବିଶେଷ କିଛି କରି ନାହାନ୍ତି, ଆଉ ଦେଢ଼ବର୍ଷ ମଧ୍ୟରେ କ'ଣ ଯେ କରିବେ ଜଣା ନାହିଁ । ଅନ୍ତତଃ ଏଠା ଲୋକମାନଙ୍କୁ ଶିକ୍ଷିତ କରିବା ପାଇଁ ସବୁ ସୀମାରେ ଭଲ ସ୍କୁଲ ସ୍ଥାପନ କରିପାରିବେ, କିମ୍ବା ଏକ୍ଷଣି ଥିବା ସ୍କୁଲଗୁଡ଼ିକୁ ପୁଷ୍ଟ କରିପାରନ୍ତି । ଏ ଅଞ୍ଚଳରେ ଅବୈତନିକ ବାଧ୍ୟତାମୂଳକ ଶିକ୍ଷା ପ୍ରଚାର କରିବାକୁ ହେବ । ତଦ୍ଦ୍ୱାରା ପ୍ରତ୍ୟେକ ପୁଅ ଝିଅ ସାକ୍ଷର ହେବେ, ଖଣ୍ଡିଏ ସମ୍ବାଦପତ୍ର ପଢ଼ିବା ଶକ୍ତି ପାଇବେ ଓ ଦେଶର ଭଲ ମନ୍ଦ ବୁଝିପାରିବେ । ତଦ୍ଦ୍ୱାରା ସେମାନେ ଏଠାର କୃଷି, ଶିଳ୍ପ ଓ ବାଣିଜ୍ୟ ବ୍ୟବସାୟର ଉନ୍ନତି କରିପାରିବେ ।

---

# ଦିବ୍ୟ ନିଶା

ଶ୍ରୀ ସୋମନାଥ ପଟ୍ଟନାୟକ ବି. ଏ. (ଅନର୍ସ)

ଆଜି ଏ ନିଶାର ଅର୍ଦ୍ଧ ଯାମେ
ବରଷାମୁଖର ଆକାଶତଳେ
ଅନ୍ଧାର ଘୋର ମେଦିନୀ ତଟେ
କାହାର ବିକାଶ-ଆଲୁଅ ଜଳେ ?

ଆଜି ଏ ନିଶାର ମୌନ-ମୁଖେ
ଶୁଣେ ମୁଁ କାହାର ଦିବ୍ୟ-ବାଣୀ ।
ଅନ୍ଧାର ତଳେ ଜୀବନେ ମୋର
ଆଶ୍ଳେଷି ଯାଏ ବରଷା ପାଣି ।

ବରଷା ଅସର୍‌-ଉତ୍କଳା ବୁକେ
ପବନ-ନାଗର ପରଶ ତୋଳେ ।
ବିଶ୍ୱ-ମାନବ-ହିଜାରବୁକେ
ନନ୍ଦସୁନ୍ଦରୀ ମଲମ ବୋଳେ ।
ଏକାଦଶୀର ଏ 'ଦିବ୍ୟନିଶା'
ଗମ୍ଭୀରୁଁ ହୋଇଛି ଗମ୍ଭୀରତର
ଆକାଶ-ଅବନୀ-ନିବିଡ଼ ରାସେ
ପଲକେ ପୁଲକେ ମାନସ ମୋର ।

ଅନ୍ତର୍ଦ୍ଧାନ ସେ ଦିବ୍ୟ ଶୋଭା,
ମଉନ-ମୁଖର ଦିବ୍ୟ-ବାଣୀ
ଜାଗ୍ରତ ଆଣେ ମାନସେ ମମ,
ଚିର ସୁନ୍ଦର ଚିରନ୍ତ-ଠାଣି ।
ଅନ୍ଧାରେ କହ ବିକଟ ବୋଲି,
ବିକଟ ନୁହେଁ ଏ ନିକଟେ ମୋର ।
ମହା ଅନ୍ଧାରୁଁ ସୃଷ୍ଟି ଉଠେ,
ଅନ୍ଧାର ନିଶି ହୁଅଇ ଭୋର ।

---

# କୁହୁକ ଚୂର୍ଣ୍ଣ (କାହାଣୀ)

ଶ୍ରୀ ପୁଷ୍ପରାଣୀ ନନ୍ଦ

ପୁରାକାଳରେ ପାରସ୍ୟ ଦେଶରେ ଜଣେ ସୁଲତାନ ବାସ କରୁଥିଲେ । ସୁଶାସକ ହିସାବରେ ତାଙ୍କର ଖ୍ୟାତି ଚାରିଆଡ଼େ ବିସ୍ତୃତ ଥିଲା । ଶତ୍ରୁମାନେ ତାଙ୍କୁ ଭୟରେ ଡରି ଦୂର ଦେଶକୁ ପଳାୟନ କରୁଥିଲେ । ଦିନେ ରାଜା ତାଙ୍କ ପାତ୍ର ମନ୍ତ୍ରୀମାନଙ୍କ ସହ ନୃତ୍ୟଗୀତ ଓ ବିଦୂଷକର ଥଟ୍ଟାପରିହାସ ଶୁଣିବାରେ ରତ ଥିଲେ, ଏପରି ସମୟରେ ବାହାରେ ଏକ କୋଳାହଳ ଶୁଣାଗଲା । କୋଳାହଳର କାରଣ ପଚାରିବାରୁ ମନ୍ତ୍ରୀ କହିଲେ ଯେ ସେ ନିଜେ ଦେଖି ନ ଆସିଲେ ସେ ବିଷୟରେ କିଛି କହିପାରିବେ ନାହିଁ । ଏହା ଶୁଣି ରାଜା ମନ୍ତ୍ରୀଙ୍କୁ ସମସ୍ତ ବିଷୟ ବୁଝିଆସି କହିବାକୁ ଆଦେଶ ଦେଲେ । ମନ୍ତ୍ରୀ ଯାଇ ଦେଖିଲେ ଯେ ରାସ୍ତା ଧାରରେ ଗୋଟିଏ ସତୁରି ଅଶୀ ବର୍ଷର ବୁଢ଼ୀ କେତେଗୁଡ଼ିଏ ସୌଖୀନ୍ ଜିନିଷ ଟୋକାଇଟିରେ ରଖି ବିକୁଛି । ବାହାରର ଅନ୍ୟ ଲୋକମାନେ ତା ସହିତ ଥଟ୍ଟା ପରିହାସ କରୁଅଛନ୍ତି ।

ରାଜା ଯେମିତି ଏ କଥା ଶୁଣିଲେ, ତତ୍‌କ୍ଷଣାତ୍ ସେହି ବୁଢ଼ୀକୁ ଦରବାରକୁ ଡକାଇ ଆଣି ସମସ୍ତ ଜିନିଷ ମୂଲଚାଲ କରି କିଣିବାକୁ ଆରମ୍ଭ କଲେ । ବୁଢ଼ୀ ଗୋଟିଏ ପାଉଡରର ବୋତଲ ଛଡ଼ା ଅନ୍ୟ ସମସ୍ତ ଜିନିଷ ରାଜାଙ୍କୁ ସ୍ୱଇଚ୍ଛାରେ ଦେଇଦେଲା । ବୁଢ଼ୀ ସେ ବୋତଲଟି ଦେବାରେ ଅନିଚ୍ଛା ପ୍ରକାଶ କରିବାରୁ ରାଜାଙ୍କର ସେ ବିଷୟରେ କୌତୂହଳ ବଢ଼ିବାକୁ ଲାଗିଲା । ଶେଷରେ ରାଜାଙ୍କର ଅନେକ ଧମକ୍ ଚମକ୍ ପରେ ବୁଢ଼ୀ ସେ ବୋତଲଟିକୁ ରାଜାଙ୍କୁ ଦେଲା । ରାଜା ତାହା କି ଜିନିଷ ଓ କପରି ବ୍ୟବହାର କରାଯାଏ ପଚାରିବାରୁ ବୁଢ଼ୀ କହିଲା ଯେ ତାହା ଗୋଟିଏ ଅଦ୍ଭୁତ ମ୍ୟାଜିକ୍ ପାଉଡ଼ର ବା କୁହୁକ ଚୂର୍ଣ୍ଣ । ସେହି ଚୂର୍ଣ୍ଣ ଉପରେ ଲେଖାଥିଲା, ଯେଉଁ ଲୋକ ସେହି ପାଉଡରରୁ ଟିକିଏ ଖାଇ ପୂର୍ବଦିଗକୁ ତିନିଥର ତାର ମୁଣ୍ଡ ନୁଆଁଇବ, ସେ ଯାହା ଇଚ୍ଛା କରିବ ତାହା ହୋଇଯିବ । କିନ୍ତୁ ସେ ତାର ପୂର୍ବରୂପ ଫେରି ପାଇବାକୁ ଇଚ୍ଛାକଲେ, ଭଗବାନ୍ 'ବଡ଼ଗାରେ' ଙ୍କ ନାମଟି ଉଚ୍ଚାରଣ କରିବ । ଏହି ଶବ୍ଦଟି ଉଚ୍ଚାରଣ କରିବା ପୂର୍ବରୁ ସେ କୌଣସି ପ୍ରକାର ହସିବ ନାହିଁ । କାରଣ ହସିବା ଦ୍ୱାରା ଏହି ଶବ୍ଦଟି ତାର ବିସ୍ମରଣ ହୋଇଯିବ । ରାଜା ଏହା ଶୁଣି ସେହି ବୁଢ଼ୀଟିକୁ ଟିକିଏ ପାଉଡର ଦେଇ ପରୀକ୍ଷା କଲେ । ସତକୁ ସତ ବୁଢ଼ୀଟି ଚାହୁଁ ଚାହୁଁ ଗୋଟିଏ ଅଦ୍ଭୁତ ପକ୍ଷୀ ହୋଇଗଲା । ଏବଂ ପୁନଶ୍ଚ ସଙ୍ଗେ ସଙ୍ଗେ ତାର ପୂର୍ବରୂପ ଧାରଣ କଲା । ରାଜା ଏହା ଦେଖି ବଡ଼ ଆଶ୍ଚର୍ଯ୍ୟ ହେଲେ ଓ ବୁଢ଼ୀକୁ ଅନେକ ପୁରସ୍କାର ଦେଇ ବିଦାକଲେ ।

ସେହି ଦିନଠାରୁ ରାଜା ଅନେକ ସମୟରେ ସେହି ପାଉଡରର ସାହାଯ୍ୟରେ ନାନା ପ୍ରକାର ରୂପ ଧାରଣ କରି ପ୍ରଜାଙ୍କର ଦୁଃଖ, ସୁଖ ସବୁ ଗୁପ୍ତରେ ଦେଖିବାକୁ ଆରମ୍ଭ କଲେ । ଅନେକ ଥର ମଧ୍ୟ ରାଜା ମାଛି ଓ କୁକୁର ହୋଇ ପ୍ରଜାମାନଙ୍କର ଅବସ୍ଥା ଦେଖୁଥିଲା-ବେଳେ, ମୃତ୍ୟୁ କବଳରୁ ଖସି ଆସିଥିଲେ । ଥରେ ରାଜା ଓ ତାଙ୍କ ମନ୍ତ୍ରୀ ଦୁଇଟି ହଂସରୂପ ଧାରଣ କରି ଏଣେ ତେଣେ ବୁଲୁଛନ୍ତି, ବାଟରେ ଗୋଟିଏ ପୋଖରୀ ପଡ଼ିଲା । ସେହି ପୋଖରୀ ଭିତରୁ ଗୋଟିଏ ପ୍ରକୃତ ହଂସ ଏ ଦୁହିଁଙ୍କୁ ତା ପାଖକୁ ଡାକିଲା । ତାର ଡାକ ଶୁଣି ଏମାନେ ଯିବାରୁ ସେ ତାଙ୍କୁ କେତେଗୁଡ଼ିଏ ବେଙ୍ଗ ଖାଇବା ପାଇଁ ଯାଚିଲା । ମାତ୍ର ସେମାନେ କଣ ବେଙ୍ଗ ଖାଆନ୍ତି ଯେ ବେଙ୍ଗ ଖାଇବେ ? ଏ ହଂସ ଦୁହେଁ ମନା କରିବାରୁ ଗୋଟିଏ ହଂସ ତାର ଡେଣା ମେଲାଇ ନାଚିବାକୁ ଆରମ୍ଭ କଲା । ତାହାର ନାଚ ଦେଖି ଏମାନେ ହସି ପକାଇଲେ, କିନ୍ତୁ ସଙ୍ଗେ ସଙ୍ଗେ ତାଙ୍କର ସେ ବୁଢ଼ୀ କଥା ମନେ ପଡ଼ିଗଲା । ପୂର୍ବ ମନୁଷ୍ୟ ରୂପକୁ ଫେରିଯିବା ପାଇଁ ଯେଉଁ ଶବ୍ଦଟି ବୁଢ଼ୀ ବତାଇଥିଲା, ତାହା ସେମାନେ ଭୁଲିଗଲେ । ରାଜା ଓ ମନ୍ତ୍ରୀ ଦୁହେଁ ଅନେକ ଦୁଃଖ କଲେ ଓ ଏଣେ ତେଣେ ପାଗଳ ପରି ବୁଲିବାକୁ ଲାଗିଲେ । ଏଣେ ରାଜ୍ୟରେ ତାଙ୍କର ଅନୁପସ୍ଥିତି ଦେଖି ପୂର୍ବ ଶତ୍ରୁମାନେ ତାଙ୍କ ସିଂହାସନ ଅଧିକାର କଲେ ।

ପୂର୍ବ ବୁଢ଼ୀଟିକୁ ଅନେକ ସମୟ ଖୋଜିବାପରେ ରାଜା ଓ ମନ୍ତ୍ରୀ ଆଗ୍ରାକୂଳରେ ଗୋଟିଏ ଜଙ୍ଗଲରେ ଆଶ୍ରୟ ନେଲେ । ସେଠାରେ ଆଶ୍ରୟ ନେଉଥିବା ସମୟରେ ଗୋଟିଏ ପେଚା ଦୁଃଖରେ କାନ୍ଦୁଥିବାର ସେମାନଙ୍କୁ ଶୁଣାଗଲା । ତାହା ଶୁଣି ରାଜା ଓ ମନ୍ତ୍ରୀଙ୍କ ମନରେ ଦୟା ହେଲା । ସେମାନେ ପେଚା ପାଖକୁ ଯାଇ ତାର ଦୁଃଖର କାରଣ ପଚାରିଲେ । ସେ ପେଚାଟି ମନୁଷ୍ୟ ସ୍ୱରରେ କହିଲା ଯେ ସେ ହିନ୍ଦୁସ୍ଥାନ ରାଜାର ଝିଅ ଥିଲା । ତାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଜଣେ ଗୁଣିଆ ତାକୁ ବିଭା ହେବାର ଇଚ୍ଛା କଲା । କିନ୍ତୁ ସେ ଏଥିରେ ରାଜି ନ ହେଲାରୁ ଗୁଣିଆ ତାକୁ ଅଭିଶାପ ଦେଇ ଗୋଟିଏ ପେଚା କରିଦେଲା । ହଂସ ଦୁହେଁ ତାକୁ ଶାପମୁକ୍ତିର ଉପାୟ ପଚାରିଲେ । ସେ କହିଲା ଯେ ଯଦି କୌଣସି ରାଜପୁତ୍ର ଅଭିଶାପ-ବଶତଃ ହଂସ ହୋଇଯାଇ ତାକୁ ବିବାହ ହେବାକୁ ଇଚ୍ଛା କରେ, ତେବେ ସେ ପୂର୍ବ ରୂପ ଫେରି ପାଇବ । ରାଜା ଓ ମନ୍ତ୍ରୀ ଦୁହେଁ ବିଚାରବିଚାରି ହେଲେ ଓ ଶେଷରେ ରାଜା ତାକୁ ବିଭା ହେବେ ବୋଲି ପ୍ରତିଜ୍ଞା କଲେ । ଏହା କହିବା ମାତ୍ରକେ ପେଚାଟି ସଙ୍ଗେ ସଙ୍ଗେ ଗୋଟିଏ ସୁନ୍ଦରୀ ରାଜକନ୍ୟା ହୋଇଗଲା । ସେ ନିଜ ରୂପ ଫେରି ପାଇବା ପରେ ହଂସ ଦୁଇଟିକୁ **କିପରି** ମୁକ୍ତ କରିବ ତାହା ଭାବିବାକୁ ଲାଗିଲା । ତାହା ନ ହେଲେ ତାର ବାପା ତାକୁ ଗୋଟାଏ ହଂସ ସହିତ ବିଭା ଦେବେ ବା **କିପରି** ?

ସେମାନଙ୍କୁ ସଙ୍ଗରେ ଧରି ଯାଉ ଯାଉ ଯମୁନା ନଦୀକୂଳରେ ରାଜକନ୍ୟା ତାର ବାପକୁ ଗୋଟିଏ ଜାହାଜରେ ଆସୁଥିବାର ଦେଖିଲା । ଦୁହେଁ ଦୁହିଁଙ୍କୁ ଚିହ୍ନି ପାରିଲେ । ରାଜା ତାଙ୍କ ଝିଅକୁ ନେଇ ପାଖରେ ବସାଇବାରୁ ହଂସ ଦୁଇଟି ମଧ୍ୟ ଯାଇ ତାଙ୍କ ପାଖରେ ବସିଲେ । ରାଜା ଏଥିରେ ବିରକ୍ତ ହୋଇ ତାଙ୍କୁ ତଡ଼ି ଦେବାରୁ ସେମାନେ ଯାଇ ନୌକାର ଅନ୍ୟ ଗୋଟିଏ ଜାଗାରେ ବସିଲେ ଯେଉଁ ଅଂଶକୁ ତାଙ୍କ ଦେଶରେ 'ବଡ଼ଗାରୋ' କହନ୍ତି । ଏହା ଦେଖି ନୌକାର ଗୋଟିଏ ଲୋକ 'ବଡ଼ଗାରୋ' ବୋଲି ପାଟି କରିବାରୁ ହଂସ ଦୁହିଁଙ୍କର ସେହି ନାମ ମନେ ପଡ଼ିଗଲା ଓ ସଙ୍ଗେ ସଙ୍ଗେ ସେମାନେ ଦୁଇଟି ସୁନ୍ଦର ମନୁଷ୍ୟ ରୂପଧାରଣ କଲେ ।

ନୌକା ଉପରେ ହଠାତ୍ ଦୁଇଟି ସୁନ୍ଦର ମନୁଷ୍ୟ ଦେଖି ରାଜା ଓ ନାବିକମାନେ ଆଶ୍ଚର୍ଯ୍ୟ ହୋଇଗଲେ; ମାତ୍ର ରାଜକନ୍ୟା ସମସ୍ତ ବୃତ୍ତାନ୍ତ ଜଣାଇବାରୁ ସେମାନେ ସବୁ ବୁଝିପାରିଲେ । ଏହାପରେ ଅତି ଆଡ଼ମ୍ବର ସହିତ ରାଜକନ୍ୟା ସଙ୍ଗେ ସୁଲତାନଙ୍କ ବିବାହ ସମ୍ପନ୍ନ ହେଲା ।

[W. M. Thackeray ଙ୍କ Sultan Stork ନାମକ ଇଂରାଜୀ ଗଳ୍ପର ମର୍ମାନୁବାଦ । ]

# ଦିବ୍ୟଜୀବନ ପଥର ଯାତ୍ରୀ

ପଥିକ—ସ୍ୱାମୀ ରାମପ୍ରେମୀ

ଆଶ୍ରମ ଜୀବନ ଦେହସହା ହୋଇ ଗଲାଣି । ପ୍ରତ୍ୟୁଷରେ ଜାହ୍ନବୀର ଶୀତଳ ଜଳରେ ସ୍ନାନ, ଶ୍ରୀ ବିଶ୍ୱନାଥ ମନ୍ଦିରରେ ପୂଜା ଜପ, ଭଜନ ହଲରେ ଅଖଣ୍ଡ ନାମ ସଂକୀର୍ତ୍ତନରେ ମଧୁର ହରିଧ୍ୱନି ଗାନ, ଯୋଗସାଧନ ହଲରେ ଆସନ ପ୍ରାଣାୟାମାଦି ଅଭ୍ୟାସ, ଅନ୍ନପୂର୍ଣ୍ଣା ହଲରେ ଅତିଥି ଅଭ୍ୟାଗତମାନଙ୍କୁ ପ୍ରସାଦ ବିତରଣ ଆଦି କାର୍ଯ୍ୟ ମନ ପ୍ରାଣରେ ପବିତ୍ରତା, ଆନନ୍ଦ ଏବଂ ଉତ୍ସାହ ଆଣି ଦିଏ । କର୍ମ ଏବଂ କର୍ମ । ପ୍ରାତଃ ୪ଟାଠାରୁ ସନ୍ଧ୍ୟା ୮ଟା ପର୍ଯ୍ୟନ୍ତ ଆଶ୍ରମର କର୍ମମୟ ଜୀବନ ଯୁବକ ସାଧକମାନଙ୍କର ସ୍ୱାଭାବିକ ଚଞ୍ଚଳ ମନକୁ ଦିବ୍ୟ ଚେତନାରେ ଭରିଦିଏ । ଶିବାନନ୍ଦ ଆଶ୍ରମରେ ଶ୍ରେଷ୍ଠ ଶିଶୁଠାରୁ ଶ୍ଲଥଚର୍ମା ବୃଦ୍ଧ ପର୍ଯ୍ୟନ୍ତ ସମସ୍ତେ ନିଜର ସାଧ୍ୟାନୁସାରେ ସର୍ବଦା କର୍ମନିରତ । "ହାତମେ କାମ—ମୁଖମେ ରାମ" ଏଠାକାର ପ୍ରଧାନ ମନ୍ତ୍ର । ପ୍ରତ୍ୟେକ କର୍ମର ପ୍ରାରମ୍ଭରେ ପ୍ରାର୍ଥନା ଏବଂ କାର୍ଯ୍ୟ ସମାପ୍ତି ପରେ ପ୍ରାର୍ଥନା କର୍ମକୁ କର୍ମଯୋଗରେ ପରିଣତ କରେ । ସକାମ କର୍ମ ବନ୍ଧନର କାରଣ ହୋଇଥାଏ କିନ୍ତୁ ନିଷ୍କାମ କର୍ମଯୋଗ ଯେ ମୁକ୍ତିର ସୋପାନ । କ୍ଳାନ୍ତି, ଅବସାଦର ସ୍ଥାନ କର୍ମଯୋଗୀଠାରୁ ବହୁ ଦୂରରେ । ତଥାପି କେତେକ ସାଧକ ମଧ୍ୟାହ୍ନ ଭୋଜନ ପରେ ମନବିନୋଦାର୍ଥେ ସ୍ୱାମୀଜୀଙ୍କର ରେକର୍ଡ, ଟେପ୍ ରେକର୍ଡ ଇତ୍ୟାଦି ବାଦନ କରିଥାନ୍ତି । ଏକାଦଶୀ ଦିନ ସାଧକମାନେ ପ୍ରାୟ ବିଶ୍ରାମ ଗ୍ରହଣ କରିଥାନ୍ତି । ତେବେ ସେମାନଙ୍କର ବିଶ୍ରାମ ଜାଗତିକ ବ୍ୟକ୍ତିଙ୍କ ପରି ଗପସପ ତାମସା ଇତ୍ୟାଦିରେ ସମୟ ନଷ୍ଟ କରିବା ନୁହେଁ । ସେମାନେ ନିଜେ ନିଜେ ସେଦିନ ପାଇଁ କିଛି ବିଶେଷ ସାଧନାର କାର୍ଯ୍ୟକ୍ରମ ନିଅନ୍ତି । କିଏ ବା ସାରାଦିନ ଅଖଣ୍ଡ ଗୀତା ପାଠ କରେ, କିଏ ୨୪ ଘଣ୍ଟା ପାଇଁ ମୌନ ବ୍ରତ ଅବଲମ୍ବନ କରେ, କିଏ ବା ଏକାନ୍ତବାସ ପାଇଁ ସାରାଦିନ ଜଙ୍ଗଲ ମଧ୍ୟକୁ ଯାଇ ଜପ ଧ୍ୟାନରେ ଦିନ କଟାଏ । ଆଉ କେହି ଗଙ୍ଗାର ପରପାରିର ଦୃଶ୍ୟ ଉପଭୋଗାର୍ଥେ ନୌକା-ଦ୍ୱାରା ଗଙ୍ଗା ପାରିହୋଇ ସ୍ୱର୍ଗାଶ୍ରମର ସ୍ୱର୍ଗସମ ରମଣୀୟ ଭୂମିରେ ବିଚରଣ କରି ସମୟ କଟାନ୍ତି ।

ମୋର ଆଶ୍ରମରେ ରହିବାର ସେଦିନକୁ ପ୍ରାୟ ଏକମାସ ହୋଇଗଲାଣି । ଯଦ୍ୟପି "ଲଛମନ ଝୁଲ୍ଲା," "ସ୍ୱର୍ଗାଶ୍ରମ" ଇତ୍ୟାଦି ପବିତ୍ର ତୀର୍ଥସ୍ଥଳ ଦର୍ଶନ କରିବାର ପ୍ରବଳ ଇଚ୍ଛା ମନମଧ୍ୟରେ ଉଙ୍କି ମାରୁଥାଏ ତଥାପି ସ୍ୱାମୀଜୀଙ୍କର ସ୍ନେହମୟ ସପ୍ରେମ ବ୍ୟବହାର ମୋର ସମସ୍ତ ଆଶା ଦବାଇ ଦିଏ । ଯେ ଥରେ ସେପରି ମହାପୁରୁଷମାନଙ୍କର ଚରଣରେ ଆଶ୍ରୟ ପାଇପାରିଛି, ତା ପାଇଁ ସଂସାରରେ ପୁଣି ଅପ୍ରାପ୍ୟ ବା ଥାଏ କଣ ? ତଥାପି ମନୁଷ୍ୟର କୌତୁହଳୀ ମନ ତ ? ସେଦିନ ଏକାଦଶୀ ଥାଏ, ଭୋଜନର ଚିନ୍ତା ତ ନ ଥିଏ, କାରଣ ଏକାଦଶୀ ଦିନରେ ପାକଶାଳା ପ୍ରାୟ ବନ୍ଦ ରହେ । ସକାଳେ ନିତ୍ୟକର୍ମ ସମାପନ କରି ବ୍ୟବସ୍ଥା-ପକଙ୍କର ଅନୁମତି ନେଇ ଲଛମନଝୁଲ୍ଲା ଦର୍ଶନପାଇଁ ବାହାରି ପଡ଼ିଲି । ବଦ୍ରୀରୋଡ଼ର ଅଙ୍କା ବଙ୍କା ରାସ୍ତା ପାହାଡ଼ ଜଙ୍ଗଲ ମଧ୍ୟ ଦେଇ ଉତ୍ତର ଆଡ଼କୁ ଗତି କରିଛି । ଦକ୍ଷିଣ ପାର୍ଶ୍ୱରେ ଗଙ୍ଗା ଚପଳମତି ବାଳିକା ପରି ନାଚି ନାଚି ଦିବ୍ୟ ସଂଗୀତ ଗାଇ ଗାଇ ବହି ଯାଉଥାଏ । ବାମ ପାର୍ଶ୍ୱସ୍ଥ ପର୍ବତରୁ ଶ୍ରେଷ୍ଠ ଶ୍ରେଷ୍ଠ ଝରଣାମାନ ଖିଲ ଖିଲ ଶବ୍ଦରେ ହସି ହସି ସତେ ଅବା ଦେବସରିତା ସହିତ ମିଳି ମିଶି କ୍ରୀଡ଼ା କରିବା ପାଇଁ ଦ୍ରୁତ ଗତିରେ ଧାଉଁଛନ୍ତି । ଗହନ ବନ ମଧ୍ୟରୁ ସମୟ ସମୟରେ ପିକର ସଂଗୀତଭରା ରବ ଓ ମର୍କଟ-ମାନଙ୍କର ଚାଁ ଚୁଁ ଶବ୍ଦ ମାର୍ଗର ନିସ୍ତବ୍ଧତା ଭଙ୍ଗ କରୁଥାଏ । ଯାତ୍ରୀମାନଙ୍କର "ବୋଲ ଶ୍ରୀ ବଦ୍ରୀବିଶାଲ ଲାଲ କୀ ଜୟ" "ଗଙ୍ଗା ମୟା କୀ ଜୟ" ଶବ୍ଦ ବନ-ସ୍ଥଳୀକୁ ଶବ୍ଦାୟିତ କରୁଥାଏ ।

ଆଶ୍ରମରୁ ପ୍ରାୟ ଅର୍ଦ୍ଧମାଇଲ ପଥ ପର୍ବତାରୋହଣ କରିବାପରେ ରାସ୍ତାର ଡାହାଣ ପାର୍ଶ୍ୱରେ ଏକ ସାଇନ-ବୋର୍ଡ଼ ଦେଖିବାକୁ ପାଇଲି,, "ଶେଷଧାରା—ଲଛମନ୍ କୁଣ୍ଡ" "ଲଛମନଜୀକା ତପସ୍ୟା ସ୍ଥାନ ।" ପୁରୁଷୋତ୍ତମ ଶ୍ରୀ ରାମଚନ୍ଦ୍ରଙ୍କର ଅନୁଜ ବୀର, ଜିତେନ୍ଦ୍ରିୟ ଶ୍ରୀ ଲକ୍ଷ୍ମଣଙ୍କର ତପସ୍ୟାସ୍ଥଳ ଦର୍ଶନ କରିବାର ଶୁଭ-ମୁହୂର୍ତ୍ତ ଯେ ଏତେ ଶୀଘ୍ର ସମ୍ଭବ ହେବ ଜାଣି ନ ଥିଲି । ସଙ୍କୀର୍ଣ୍ଣ ରାସ୍ତାଟିଏ ତଳ ଆଡ଼କୁ ଗତି କରିଛି । ପ୍ରାୟ ଦୁଇଶତ ଫୁଟ ତଳକୁ ଓହ୍ଲାଇବା ପରେ ଏକ କ୍ଷୁଦ୍ର ଆଶ୍ରମ ଦୃଷ୍ଟିଗୋଚର ହେଲା । ଆଶ୍ରମ ଆଗରେ ଏକ କୁଣ୍ଡ । କେଉଁ ଗୁପ୍ତ ରାଜ୍ୟରୁ ସ୍ୱଚ୍ଛ ନିର୍ମଳ ଜଳ ଆସି ସେହି କୁଣ୍ଡମଧ୍ୟରେ ପଡ଼ୁଛି ତାହା ଜଣାଯାଏ ନାହିଁ । କୁଣ୍ଡର ଗଭୀରତା ପ୍ରାୟ ୩ଫୁଟ । କୁଣ୍ଡ ଉଚ୍ଛୁଳ ନିର୍ମଳ ଜଳ ଗଙ୍ଗାକୁ ବହିଯାଏ । କୁଣ୍ଡ ନିକଟରେ ହନୁମାନ-ଜୀଙ୍କର ଏକ କ୍ଷୁଦ୍ର ମନ୍ଦିର ଏବଂ ଏକ କ୍ଷୁଦ୍ର ଆଶ୍ରମ । ତିନି ଚାରି ଜଣ ବୈରାଗୀ ସାଧୁ ସେଠାରେ ସାଧନାରତ । ଆଶ୍ରମର ପ୍ରାୟ ୪୦ ଫୁଟ ତଳେ ଗଙ୍ଗା । କ୍ଷୁଦ୍ର ଆଶ୍ରମ ଟିର ଦୃଶ୍ୟ ଅତ୍ୟନ୍ତ ମନୋରମ । ଏଇଥି ପାଇଁ ତ ଶ୍ରୀ ଲକ୍ଷ୍ମଣଜୀ ଏହି ସ୍ଥାନଟି ନିଜର ସାଧନା ପାଇଁ ବାଛି ନେଇଥିଲେ । ପ୍ରକୃତରେ ଏପରି ସ୍ଥାନରେ ପହଞ୍ଚିବା ମାତ୍ରେ ମନୁଷ୍ୟ କ୍ଷୁଧା ପିପାସା ଭୁଲିଯାଏ । ଈଶ୍ୱର ସାକ୍ଷାତକାର ପାଇଁ ନିର୍ଜନତା ଯେତିକି ଆବଶ୍ୟକ, ପାରିପାର୍ଶ୍ୱିକ ରମଣୀୟ ଦୃଶ୍ୟ ମଧ୍ୟ ସେତିକି ଆବଶ୍ୟକ । ସେଥିପାଇଁ ସାଧକମାନେ ପର୍ବତ ବା ନଦୀତଟର ଆଶ୍ରୟ ନେଇଥାନ୍ତି ।

ପ୍ରାୟ ଏକ ଘଣ୍ଟା ପର୍ଯ୍ୟନ୍ତ ସେହି ଲଛମନ କୁଣ୍ଡର ଏକାନ୍ତ ପ୍ରଦେଶରେ ବିଚରଣ କରିବାକୁ ଲାଗିଲି । ଜଣେ ସାଧୁ ସସ୍ନେହ ବଚନରେ ସେହି ପୁରାତନ ଆଶ୍ରମ ସମ୍ବନ୍ଧରେ ଅନେକ କଥା କହିଲେ । ତାଙ୍କ-ଠାରୁ ବିଦାୟ ନେଇ ପୁଣି ଲଛମନ ଝୁଲାର ମାର୍ଗ ଆଡ଼କୁ କିଛିଦୂର ଗତି କରିଛି ଏପରି ସମୟରେ ତରୁଲତାପୂର୍ଣ୍ଣ କୁଞ୍ଜମଧ୍ୟରେ ଅନ୍ୟ ଏକ ମନୋରମ ତପୋଭୂମି ଦୃଷ୍ଟିଗୋଚର ହେଲା । ଅନୁସନ୍ଧିତ୍ସୁ ମନର ଆଗ୍ରହ ଦବାଇ ପାରିଲି ନାହିଁ । ସେହି ସ୍ଥଳର ମାର୍ଗ ଅନୁସରଣ କରି ଯାଇ ତାହାର ପ୍ରବେଶ ଦ୍ୱାରରେ ପହଞ୍ଚିଲି । ଆଶ୍ରମର ପ୍ରବେଶଦ୍ୱାର ବନ୍ଦ ଥାଏ । ପାର୍ଶ୍ୱସ୍ଥ ସ୍ତମ୍ଭରେ ଲେଖା ଥାଏ "ବୈକୁଣ୍ଠ ଧାମ" । ଖୁବ୍ ଚମତ୍କାର ନାମ ତ ? ତେବେ କଣ ସାଧନାର ପ୍ରଥମ ସୋପାନରେ ପଦାର୍ପଣ ନ କରୁଣୁ ମୁଁ ବୈକୁଣ୍ଠଧାମରେ ପହଞ୍ଚିଣି ? ଜନ୍ମ ଜନ୍ମ ତପସ୍ୟାପରେ ପ୍ରକୃତ ବୈକୁଣ୍ଠଧାମ ଦର୍ଶନ କରିବାର ସୌଭାଗ୍ୟ ଆସିବ କି ନାହିଁ; ତେବେ ମର୍ତ୍ତ୍ୟର ବୈକୁଣ୍ଠ ଦର୍ଶନର ସୌଭାଗ୍ୟ ଯେ ଏତେ ଶୀଘ୍ର ଆସି ପହଞ୍ଚିଛି, ତାହା କି କମ ଗୌରବର କଥା ? "ବୈକୁଣ୍ଠ-ଧାମ"ର ଫାଟକ ଭିତରୁ ବନ୍ଦଥିଲା । ଫାଟକ କବାଟରେ ଲେଖା ଥିଲା "ପ୍ରବେଶ ନିଷେଧ" । ମନରେ ଯେତିକି ଆଗ୍ରହ ଏବଂ ଉତ୍ସାହର ସଞ୍ଚାର ହୋଇଥିଲା ତାହା ଏହି ଶବ୍ଦକୁ ଦେଖି ଦବିଗଲା । ଭାବିଲି ବୈକୁଣ୍ଠବାସୀ ନାରାୟଣ, କରୁଣାମୟ । ତାଙ୍କର କରୁଣା ହେଲେ ପାପୀ, ତାପୀ ସମସ୍ତେ ବୈକୁଣ୍ଠରେ ପ୍ରବେଶ ଅଧିକାର ପାଇଥାନ୍ତି । ତେବେ ଏହି ଭୂବୈକୁଣ୍ଠର ନିବାସୀ ନାରାୟଣ କଣ ମୋ ପରି ହତଭାଗ୍ୟକୁ ତାଙ୍କର ଧାମ ଦର୍ଶନର ସୌଭାଗ୍ୟରୁ ବଞ୍ଚିତ କରିବେ ? ତେବେ ଚେଷ୍ଟା ନ କରି ଫେରିବା ଅପେକ୍ଷା ଚେଷ୍ଟା କରି ବିଫଳ ହେବା ବରଂ ଭଲ ।

ଫାଟକ ପାର୍ଶ୍ୱରେ ଉଙ୍କିମାରି ଦେଖିଲି, ଦିବ୍ୟ ସୁନ୍ଦର ଏକ ଆଶ୍ରମ—ଫାଟକ ପାଖରୁ ପ୍ରାୟ ୨୫।୩୦ଟି ସୋପାନ ଗଙ୍ଗାଆଡ଼କୁ ଗତି କରିଛି । ଗଙ୍ଗାର ବକ୍ଷକୁ ଲାଗି ଗୋଟିଏ କ୍ଷୁଦ୍ର ଏବଂ ସୁନ୍ଦର ଭବନ । ଜଣେ ଦୀର୍ଘକାୟ ବ୍ୟକ୍ତି କୌଣସି କାର୍ଯ୍ୟରତ ଥିବାର ଦୃଷ୍ଟି-ଗୋଚର ହେଲା । ମନମଧ୍ୟରେ ବହୁ ଦ୍ୱିଧା ପରେ ତାଙ୍କୁ ସାହସ କରି ଡାକିଲି । ସେ ବୋଧହୁଏ ଟିକିଏ ବିରକ୍ତି ପ୍ରକାଶ କଲେ, କିନ୍ତୁ ଫାଟକ ନିକଟକୁ ଆସି ମୋର ଅଭିପ୍ରାୟ ସମ୍ବନ୍ଧରେ ପ୍ରଶ୍ନ କଲେ । ମୁଁ ବିନମ୍ରଭାବରେ ଆଶ୍ରମଦର୍ଶନର ଆଶା ପ୍ରକାଶ କଲି । ବୋଧହୁଏ ମୋର ନମ୍ରବାଣୀ ତାଙ୍କ ପ୍ରାଣରେ ଦୟାର ସଞ୍ଚାର କଲା । ସେ କହିଲେ, "ଏଠାକୁ ସର୍ବସାଧାରଣଙ୍କର ଆସିବା ନିଷେଧ, ଏଠାରେ ଜଣେ ମହାତ୍ମା ତପସ୍ୟା

# ଆପଣ ଆଉ ଆମର ଉତ୍ତର

[୧ । ଗ୍ରାହକ ନମ୍ବର ନ ଦେଲେ ଉତ୍ତର ପାଇବେ ନାହିଁ । ଯେଉଁମାନେ ଏଜେଣ୍ଟଙ୍କଠାରୁ ନିୟମିତ ପତ୍ରିକା କିଣନ୍ତି, ସେମାନେ ଏଜେଣ୍ଟଙ୍କ ନାମସହ ପ୍ରଶ୍ନ ପଠାଇ ପାରିବେ ।

୨ । ଇଂରାଜୀ ମାସର ୨୦ ତାରିଖ ପୂର୍ବରୁ ପ୍ରଶ୍ନଗୁଡ଼ିକ ଆମର ହସ୍ତଗତ ହେବା ଆବଶ୍ୟକ ।

୩ । ଆପଣଙ୍କ ପ୍ରଶ୍ନର ଉତ୍ତର କାହିଁକି ଦିଆ ନ ଗଲା, ତାର କାରଣ ଦର୍ଶାଇବାକୁ ଆମେ ବାଧ ନୋହୁଁ ।

୪ । ପ୍ରଶ୍ନ ସଙ୍ଗେ ଅନ୍ୟ କିଛି ଲେଖିବେ ନାହିଁ ।]

୧ । କୃଷ୍ଣଚନ୍ଦ୍ର ମହାନ୍ତି, କଟକ

ପ୍ର—ଗୋଟିଏ ରେଲ ଇଞ୍ଜିନର ଦାମ୍ କେତେ ?

ଉ—ଭାରତରେ ବର୍ତ୍ତମାନ ତିଆରି ହେଉଥିବା ଇଞ୍ଜିନଗୁଡ଼ିକର ଦାମ୍ ପ୍ରାୟ ୫½ ଲକ୍ଷ ଟଙ୍କା ପଡୁଛି । ବିଦେଶରୁ ଆସୁଥିବା ଇଞ୍ଜିନଗୁଡ଼ିକ ମଧ୍ୟ ସେହିପରି ୫ ଲକ୍ଷରୁ ୫½ ଲକ୍ଷ ଯାଏ ପଡ଼େ ।

୨ । ମନ୍ମଥନାଥ ମହାନ୍ତି, କସର୍ଦା

ଆପଣ ଔଷଧ ବ୍ୟବସାୟ କରିବାକୁ ଚାହାନ୍ତି । କଟକ ମେଡିକାଲ କଲେଜରୁ କି ସାହାଯ୍ୟ ପାଇ ପାରିବେ ପଚାରିଛନ୍ତି । ମାଟ୍ରିକ ପାଶ୍ କରି ସେ କଲେଜରେ ପଢି ପାରିବେ କିପରି ? ଅନ୍ତତଃ ଆଇ. ଏସ୍. ସି. ପାଶ୍ ଦରକାର । ସେଠାରେ ପାସ୍ କଲେ M.B.B.S ଡିଗ୍ରୀ ମିଳେ । ଡାକ୍ତରୀ ପାଠ ସେଠାରେ ପଢ଼ାଯାଏ ମାତ୍ର—ବ୍ୟବସାୟ ଶିକ୍ଷାର କୌଣସି ବନ୍ଦୋବସ୍ତ ନାହିଁ । ଅବଶ୍ୟ ଡାକ୍ତର ନ ହୋଇ ଔଷଧ ବ୍ୟବହାର କରିବା ସୁବିଧାଜନକ ନୁହେ ।

୩ । ଜୟନ୍ତ କୁମାର ରଥ, ଭୁବନେଶ୍ବର

ପ୍ର—ପୃଥିବୀର ଶ୍ରେଷ୍ଠ ଲେଖକ, ଶ୍ରେଷ୍ଠ ଗାୟକ ଓ ଶ୍ରେଷ୍ଠ ଅଭିନେତା କିଏ କିଏ ?

ଉ—ଏ ପ୍ରଶ୍ନର ଉତ୍ତର ଦେବା ସହଜ ନୁହେଁ । ପୃଥିବୀ ତ ଦୂରର କଥା, ଏ କ୍ଷେତ୍ରରେ ଓଡ଼ିଶାର ଶ୍ରେଷ୍ଠମାନଙ୍କୁ ବାଛିବା ମଧ୍ୟ କଷ୍ଟକର । କାରଣ ଭିନ୍ନ ଭିନ୍ନ ବିଭାଗରେ ଭିନ୍ନ ଭିନ୍ନ ଲୋକ କୃତିତ୍ୱ ଅର୍ଜନ କରିଛନ୍ତି ।

୪ । କାଳନ୍ଦୀ ଚରଣ ସାହୁ, ବାଲିଆ

ପ୍ର—ପୃଥିବୀର କେଉଁ ଦେଶରେ ସାପ ଦେଖାଯାନ୍ତି ନାହିଁ ?

ଉ—ଆୟାରଲାଣ୍ଡ ଓ ନିଉଜିଲାଣ୍ଡରେ ସାପ ନାହାନ୍ତି ।

୫। ସର୍ବେଶ୍ୱର ତ୍ରିପାଠୀ, ପୁରୀ

ପ୍ର—କେଉଁ ଗଛ କେତେ ପୁରୁଣା କିପରି ଜାଣିବ ?

ଉ—ଗଛକୁ କାଟିଦେଲେ କାଠର ଯେଉଁ ମଞ୍ଜ ଦେଖାଯିବ ତାକୁ ଦେଖିଲେ ଜଣାଯିବ ତା ଭିତରେ ଅନେକଗୁଡ଼ିଏ ସ୍ତର ରହିଛି । ପ୍ରତ୍ୟେକ ବର୍ଷ ମଞ୍ଜ ଦେହରେ ଗୋଟିଏ ଲେଖାଏଁ ନୂଆ ସ୍ତର ଯୋଗ ହୁଏ । ସୁତରାଂ ସେହି ସ୍ତରଗୁଡ଼ିକ ଗଣି ଗଛର ବୟସ ନିର୍ଣ୍ଣୟ କରିହେବ ।

୬ । ଭାଗବତ ସାହୁ, ରେକାବି ବଜାର

ପ୍ର—ବ୍ୟୋମ ଡାକରେ ଯାଉଥିବା ଚିଠିପତ୍ରରେ ଯେଉଁ ନିଦର୍ଶନ ପତ୍ର ମରାଯାଏ, ସେଥିରେ ଲେଖାଥିବା 'Par Avion'ର ଅର୍ଥ କଣ ?

ଉ—ଫରାସୀ ଭାଷାରେ Avionର ଅର୍ଥ ଯୁଦ୍ଧ ବିମାନ—ବର୍ତ୍ତମାନ ଅବଶ୍ୟ 'ଉଡ଼ାଜାହାଜ ଡାକ' ପାଇଁ ଏହି ସଙ୍କେତ ବ୍ୟବହୃତ ହେଉଅଛି । ଏହାର ଅର୍ଥ 'ବିମାନ ଯୋଗେ' ।

୭ । ସେକ୍ରେଟେରୀ, ଗଙ୍ଗାଧର କମନ ରୁମ୍, ବରଗଡ଼

ପ୍ର—ସାଧାରଣ ମନୁଷ୍ୟଙ୍କର ବୈଦ୍ୟ ଡାକ୍ତରମାନେ, ମାତ୍ର ଡାକ୍ତରଙ୍କ ବୈଦ୍ୟ କିଏ ?

ଉ—ସେଇ ଡାକ୍ତର, ଯେହେତୁ ଡାକ୍ତରମାନେ ମଧ୍ୟ ମନୁଷ୍ୟ ।

( ୨୫ ପୃଷ୍ଠା ଦେଖନ୍ତୁ )

# ସାହିତ୍ୟ ଓ ସାଧାରଣ ଜ୍ଞାନ

ଜେନାମଣି ନରେନ୍ଦ୍ର କୁମାର

ସମସ୍ୟାବହୁଳ ଏ ଯୁଗରେ ନୁହେଁ, ସବୁ ଯୁଗରେ ବଞ୍ଚି ରହିବାକୁ ହେଲେ ମଣିଷକୁ ତା ପାରିପାର୍ଶ୍ୱିକ ଅବସ୍ଥା ବିଷୟରେ କେତେକ ସାଧାରଣ ତଥ୍ୟ ଜାଣିବାକୁ ହେବ । ତା ନ ହେଲେ ଜୀବନ ଧାରଣ କରିବା ଲାଗି, ବଞ୍ଚିବାକୁ ସଂଗ୍ରାମ କରୁଥିବା ଲକ୍ଷ ଲକ୍ଷ ଜୀବନ ଭିତରେ ମୁଣ୍ଡ ଟେକି ଉଠିବା ଲାଗି, ସେ ଯେଉଁ ବାଟଦେଇ ଆଗେଇବ ସେ ବାଟରେ ଝୁଣ୍ଟି ପଡ଼ିବ । ତା'ପରେ ସୃଷ୍ଟିର ଗୋଟାଏ ବିଚିତ୍ର ଅଥଚ ଅତି ଧ୍ରୁବ ନିୟମ ଏହି ଯେ, ତୁମେ ଯଦି ଦୁନିଆକୁ ଜାଣିବାକୁ ଚାହିଁନ, ଦୁନିଆ ମଧ୍ୟ ତୁମକୁ ଜାଣିବାକୁ ଚାହିଁବନି । ପୃଥିବୀର ବାହାର ଆଡ଼ମ୍ବର ଛାଡ଼ିଦେଇ ଯେଉଁମାନେ ବଣ ଜଙ୍ଗଲକୁ ପଳେଇ ଯାଉଛନ୍ତି, ନଶ୍ୱର ଭୋଗ-ବିଳାସ ଛାଡ଼ି ଯେଉଁମାନେ ସଂସାର ତ୍ୟାଗ କରୁଛନ୍ତି, ସେମାନେ ମୁକ୍ତି ପାଇଲେ କି ନା ସେକଥା ସେମାନେ ଜାଣନ୍ତି ବା ସେମାନଙ୍କ ମୋକ୍ଷକର୍ତ୍ତା ଭଗବାନ ଜାଣନ୍ତି । ମାତ୍ର ସାଧାରଣ ମନୁଷ୍ୟ ତାଙ୍କ ଖବର ରଖିନି । ସାଧାରଣ ମନୁଷ୍ୟ ବୁଦ୍ଧ, ଯୀଶୁ, ନାନକଙ୍କ ପାଖେ ମୁଣ୍ଡ ନୁଆଇଁଚି । କାରଣ—ସେମାନେ ସାଧାରଣ ମନୁଷ୍ୟର ଖବର ରଖିଥିଲେ, ସୁଖଦୁଃଖ ବୁଝିଥିଲେ ।

ଆଜିର ଯନ୍ତ୍ରଯୁଗରେ ଏଇ ଚିରନ୍ତନ ସତ୍ୟ ବରଂ ଆହୁରି ପରିସ୍ଫୁଟ ହୋଇ ଉଠିଛି । ସାଧାରଣ ମନୁଷ୍ୟକୁ ଆଜି ଅନେକ ସାମାଜିକ ସଂସ୍ଥା ଓ ସ୍ତରର ସଂସ୍ପର୍ଶରେ ଆସିବାକୁ ପଡ଼ୁଛି—ଜୀବନର ପରିସର ବଢ଼ି ଯାଇଛି । ସେଇ ଦୃଷ୍ଟିରୁ ବଞ୍ଚିବା ଲାଗି ତେଲ, ଲୁଣ ଯେତିକି ଆବଶ୍ୟକ ହେଉଛି, ରାଜନୀତି, ସାହିତ୍ୟ, ବିଜ୍ଞାନ, ସଙ୍ଗୀତ ମଧ୍ୟ ସେତିକି ଆବଶ୍ୟକ ହେଉଛି । ତା ନ ହେଲେ ଆଜିର ଜୀବନ ପୃଥିବୀର ଗତି ସହିତ ତାଳ ରଖି ଯାଇ ନ ପାରେ । ତେଣୁ ଜଣେ ସାଧାରଣ ନାଗରିକ ହେବାକୁ ହେଲେ ଆମକୁ ସବୁଥିରୁ କିଛି କିଛି ଜାଣିବାକୁ ହେବ ।

ସାହିତ୍ୟିକର ଦାୟିତ୍ୱ ଏ ଦିଗରେ ସବୁଠୁଁ ବେଶୀ । କାରଣ ଏଠି ଖାଲି ସେ ଜାଣିବା ଆବଶ୍ୟକ ନୁହେଁ । ଅନ୍ୟମାନଙ୍କୁ ଜାଣିବା ଭଳି କିଛି ସାହିତ୍ୟର ସୁସ୍ୱାଦୁ ମାଧ୍ୟମରେ ଯଦି ସେ ପରିବେଷଣ କରି ପାରିଲା, ତେବେ ତାର ବାହାଦୁରି । କାରଣ ଲୋକ ପ୍ରବନ୍ଧର ରୁକ୍ଷତା ଭିତରେ, କବିତାର ସ୍ନିଗ୍ଧତା ମଧ୍ୟରେ ଏବଂ ଗଳ୍ପର ରୋମାଞ୍ଚ ମଧ୍ୟରେ ଯଦି ତା' ବଞ୍ଚି ରହିବାରେ ସାହାଯ୍ୟ କଲାଭଳି କିଛି ତଥ୍ୟ ପାଇ ପାରିଲା, ତା' ହେଲେ ସେ ଯଥେଷ୍ଟ କିଛି ପାଇଲା ବୋଲି ମନେ କରିବାକୁ ହେବ ।

ଏ ଦିଗରେ ଏଚ୍. ଜି. ୱେଲ୍‌ସ୍, ଗଲ୍‌ସୱର୍ଦ୍ଦି ଇତ୍ୟାଦି ଏବଂ ଭାରତର ଶ୍ରୀ ମୁଲ୍‌କ୍ ରାଜ୍ ଆନନ୍ଦ୍, ଶ୍ରୀ ଗୁଲେରୀ, ବନଫୁଲ ଇତ୍ୟାଦିଙ୍କର ଲେଖା ଖୁବ୍ ଖୋରାକ ଯୋଗାଏ ବୋଲି ମୁଁ ସବୁଠିଁ କହି ଆସିଛି । ଏଚ୍.ଜି.ୱେଲ୍‌ସ୍ ଙ୍କ The Cone ଗପରୁ, ବ୍ଲାଷ୍ଟଫର୍ଣ୍ଣେସ୍ ବିଷୟରେ ଏବଂ ଶ୍ରୀ ଗୁଲେରୀଙ୍କ 'ଉସ୍‌ନେ କହା ଥା' ଗପରୁ ଯୁଦ୍ଧକ୍ଷେତ୍ରର ଦୃଶ୍ୟ ବିଷୟରେ ମୁଁ ଯାହା ଧାରଣା ପାଇଛି, କୌଣସି ସାଧାରଣ ଜ୍ଞାନ ସମ୍ବନ୍ଧୀୟ ପୁସ୍ତକ ବା ଏନ୍‌ସାଇକ୍ଲୋପିଡ଼ିଆରୁ ସେପରି ଜୀବନ୍ତ ଧାରଣା ମୋତେ ମିଳିଥା'ନ୍ତା କି ନା ସନ୍ଦେହ ।

ତେଣୁ ପାଠକର ସାଧାରଣଜ୍ଞାନର ମାନ ଯଥେଷ୍ଟ ବଢ଼ିଯାଏ, ଯଦି ତା' ପଢ଼ିବା ପାଇଁ ସେପରି ବଳିଷ୍ଠ ସୁରୁଚିପୂର୍ଣ୍ଣ, ସୁଚିନ୍ତିତ ଲେଖା ମିଳେ ।

ଓଡ଼ିଆ ସାହିତ୍ୟ, ବିଶେଷତଃ ଆଧୁନିକ ଓଡ଼ିଆ ସାହିତ୍ୟପ୍ରତି ନଜର ପକେଇଲେ ଏ ଦିଗରେ ହତାଶ ହେବାକୁ ହୁଏ । ସେ ସବୁ ଆଲୋଚନାର ବିସ୍ତୀର୍ଣ୍ଣ କ୍ଷେତ୍ର ଏ ନୁହେଁ, ବରଂ କୌଣସି ସାହିତ୍ୟ-ସମାଲୋଚକ ଏ ଦିଗରେ ଉଦ୍ୟମ କରିବା ଉଚିତ ।

ତେବେ ଆଜିକାଲି ବିଭିନ୍ନ ପତ୍ର ପତ୍ରିକାରେ ଯେଉଁସବୁ ଲେଖା ପ୍ରକାଶ ପାଉଛି, ତା ମଧ୍ୟରୁ

କେତେକ ଲେଖାରେ ସାଧାରଣଜ୍ଞାନ ଅଭାବଜନିତ ତ୍ରୁଟି ଏତେ ରହିଯାଉଛି ଯେ, ଅନେକ ସମୟରେ ତାହା ଅସହ୍ୟ ହୋଇ ପଡ଼ୁଛି ।

ଏହା ଏକ ସମୟରେ ଲେଖକଙ୍କ ଅଯୋଗ୍ୟତା ସଙ୍ଗେ ସଙ୍ଗେ ସମ୍ପାଦକଙ୍କ ଦାୟିତ୍ୱହୀନତାର ମଧ୍ୟ ପରିଚୟ ଦିଏ ।

ଅଜସ୍ର ଦୃଷ୍ଟାନ୍ତ ମଧ୍ୟରୁ ମୁଁ କେବଳ ଦୁଇଟିର ଉଲ୍ଲେଖ କରିବି । ଗୋଟିଏ ହେଉଛି—

'ରେଡ଼ିୟମ୍ ଉଦ୍ଭାବକା ମାଡ଼ାମ କ୍ୟୁରି
ମୁଁ ଆବିଷ୍କାର କରିନି କିଛି ନିଜ ଥିଓରି' ।

—ଏଠାରେ 'ଉଦ୍ଭାବନ' ଓ ଆବିଷ୍କାର ଶବ୍ଦର ଅର୍ଥ ଲେଖକଙ୍କୁ ଜଣା ନାହିଁ ବୋଧହୁଏ । [ଅଥଚ କବିତାଟିର ନାଁ ଆବିଷ୍କାର !'] କାରଣ ଯେଉଁ ଜିନିଷର ଅସ୍ତିତ୍ୱ ଥାଏ, ତାକୁ ଲୋକଲୋଚନ ସମ୍ମୁଖକୁ ଅଣାଯାଏ, ସେଠି ଉକ୍ତ ପଦାର୍ଥ ଆବିଷ୍କୃତ ହୁଏ । ରେଡ଼ିୟମ୍ ବୋଲି ଗୋଟାଏ ତେଜସ୍କ୍ରିୟ ବସ୍ତୁ ପୃଥିବୀରେ ଅନେକ ଦିନରୁ ଥିଲି । ମାଡ଼ାମ କ୍ୟୁରି ତାହା ଭାବି ଭାବି ବାହାର କରି ନାହାନ୍ତି, ଖୋଜି ଖୋଜି ବାହାର କରିଛନ୍ତି ।

ଅପରପକ୍ଷେ, ଥିଓରି ପ୍ରତିପାଦନ କରାଯାଏ—, ତେଣୁ ଏହା ମସ୍ତିଷ୍କ ପ୍ରସୂତ ପଦାର୍ଥ, ଏହାର ଅସ୍ତିତ୍ୱ ଆଗେ ନ ଥିଲି । ତେଣୁ ଥିଓରି ଉଦ୍ଭାବିତ ହୁଏ ।

ଆଉ ଜଣେ କବି ଲେଖିଛନ୍ତି—

'ମାଟି ଭିତରେ ପୋତିଥିଲି—
ମୃତ ଶବ ପରି
ସେ ଆଜି ଜୀବନ ପାଇଛି ।'

ଶବ ତ ସବୁବେଳେ ମୃତ । ଜୀବନ୍ତ ଶବ କେଉଁଠି କେହି ଦେଖିଥିବାର ଜଣାନାହିଁ । ତାକୁ ମୃତ ଶବ କହିବାରେ ବ୍ୟାକରଣଗତ ଦୋଷ ଅଛି ବୋଲି ଶିକ୍ଷକ ଆମକୁ ସ୍କୁଲ ଜୀବନରେ କହିଥିଲେ ।

ଏସବୁ ଭୁଲ୍ ଅନେକ ସମୟରେ ସାଧାରଣ ପାଠକଙ୍କୁ ପ୍ରଭାବିତ କଲେ ତାର ଫଳ କେତେ ଗୁରୁତର ହେବ ତାହା ସମ୍ପାଦକମାନେ ବିବେଚନା କରିବା ଉଚିତ । ଲେଖକମାନେ ଅବଶ୍ୟ ତାଙ୍କ ବୁଦ୍ଧିବିଦ୍ୟାର ସୀମାଭିତରେ ଲେଖିବେ ।

—୦—

( ୨୩ ପୃଷ୍ଠାର ଅବଶିଷ୍ଟାଂଶ )

୮ । ପ୍ରଭାକର ଦାଶ, ପୁରୀ

ପ୍ର—ମୁଁ ପୁରୀ ସହରର ଗୋଟିଏ ମାନଚିତ୍ର କରିବାକୁ ଭାବିଛି । ସେଥିପାଇଁ କିଛି ପରାମର୍ଶ ଦେବେ ।

ଉ—ଆପଣ ସରକାରୀ ବାରିକ୍‌ମିସ୍ତ୍ରୀ ବିଭାଗରୁ କିମ୍ବା ମ୍ୟୁନିସିପାଲିଟି ଅଫିସରୁ ପୁରୀ ସହରର ବଡ଼ ମାନଚିତ୍ର ପାଇବେ । ତାକୁ ଦେଖି ଛୋଟ ମାନଚିତ୍ର କରାଇନେଇ ପାରିବେ ।

୯ । ବଂଶୀଧର ମହାପାତ୍ର, ବାଲେଶ୍ୱର

ପ୍ର—ଓଡ଼ିଶା ରାଜ୍ୟପାଳଙ୍କର ପୂରାନାମ କଣ ? ତାଙ୍କ ନାଁ ପୂର୍ବରୁ ପି.ଏସ୍. କାହିଁକି ଅଛି ?

ଉ—ପୂଷାପତି ସଞ୍ଜୀବ ଶ୍ରୀ କୁମାର ସ୍ୱାମୀ ରାଜା

୧୦ । ସନାତନ ମହାନ୍ତି, ଢେଙ୍କାନାଳ

ପ୍ର—ବ୍ୟାଙ୍କରେ କିପରି ଟଙ୍କା ଜମା କରିବାକୁ ହୁଏ ?

ଉ—ପ୍ରତ୍ୟେକ ବ୍ୟାଙ୍କରେ ସେଭିଂସ୍ ବା ଟଙ୍କା ଜମା କରିବାର ସ୍ୱତନ୍ତ୍ର ବିଭାଗ ରହିଛି । ଡାକଘରେ 'ସେଭିଂସ୍ ବ୍ୟାଙ୍କ୍' ଥାଏ । ଅନ୍ୟ ବ୍ୟାଙ୍କମାନଙ୍କରେ ଦୁଇପ୍ରକାରରେ ଟଙ୍କା ଜମା କରାଯାଇ ପାରେ । ଗୋଟିଏ ହେଉଛି Current deposit ଏବଂ ଅପରଟି Fixed deposit । ପ୍ରଥମଟିରେ ଜମାଟଙ୍କାକୁ ଆବଶ୍ୟକ ମତେ କାଢ଼ି ଆଣିହୁଏ । ଏଥିରେ ପ୍ରାୟ ସୁଧ ମିଳେ ନାହିଁ । ଯାହା ମିଳେ ତାହା ଖୁବ୍ ସାମାନ୍ୟ । ଦ୍ୱିତୀୟଟିରେ ନିର୍ଦ୍ଦିଷ୍ଟ ସମୟ ପାଇଁ ବ୍ୟାଙ୍କ ଟଙ୍କା ଜମା ରଖେ । ଉକ୍ତ ସମୟ ମଧ୍ୟରେ ଟଙ୍କା କାଢ଼ିଆଣି ହୁଏ ନାହିଁ । ଏଥିରେ ବେଶୀ ସୁଧ ମିଳେ । ପାସ୍‌ବହି ସାହାଯ୍ୟରେ ସେଭିଂସ୍ ବ୍ୟାଙ୍କରେ ଟଙ୍କା ଜମା କରାଯାଏ ମାତ୍ର ସ୍ଥାୟୀ ଡ଼ିପୋଜିଟ୍ ପାଇଁ କୌଣସି ପାସ୍‌ବହି ଆବଶ୍ୟକ ହୁଏନାହିଁ । ବ୍ୟାଙ୍କ କର୍ତ୍ତୃପକ୍ଷଙ୍କୁ ଜଣାଇଲେ ସେ ଟଙ୍କା ନେଇ ଖଣ୍ଡେ ରସିଦ ବା ସାର୍ଟିଫିକେଟ ଦିଅନ୍ତି ।

—୦—

## ଖାଣ୍ଟି ମୁଆଣ୍ଡ

ଜଣେ ଯାଦୁକର ମ୍ୟାଜିକ୍ ଦେଖାଉଥିଲା । ସେ ଜଣେ ସ୍ତ୍ରୀ ଲୋକକୁ ଗୋଟିଏ ବାକ୍ସରେ ପୂରାଇ ବାକ୍ସ ବନ୍ଦ କରି ଦେଲା । କିଛିକ୍ଷଣ ପରେ ଖୋଲିଲା-ବେଳକୁ ତା ଭିତରୁ ଠେକୁଆଟିଏ ବାହାରିଲା ।

ଦର୍ଶକମାନଙ୍କ ମଧ୍ୟରୁ ଜଣେ କହିଲା, "ଆଚ୍ଛା, ତୁମେ ମୋ ସ୍ତ୍ରୀକୁ ବାକ୍ସରେ ପୂରାଇ ଏହିପରି କରିପାରିବ ?" ଯାଦୁକର ହସି କହିଲା, "ତେବେ ତୁମେ ସ୍ତ୍ରୀଙ୍କୁ ବିଦାୟ ଦେବାକୁ ଚାହିଁ ?"

ଦର୍ଶକ କହିଲା, "ନା, ଠିକ୍ ତା ନୁହେଁ ଯେ, ମୋର ଗୋଟିଏ ସାଙ୍ଗକୁ ଠେକୁଆଟିଏ ଆଣିଦେବି ବୋଲି ଜବାବ୍ ଦେଇଥିଲି । ଦେଇପାରୁ ନାହିଁ ।"

× × ×

ଟାଉନବସ୍ ଭିଡ଼ ଭର୍ତ୍ତି ହୋଇଥାଏ । ୪ବର୍ଷର କୁନି ତା ବାପାଙ୍କ କୋଡ଼ରେ ବସିଛି । ଜଣେ ଖୁବ୍ ମୋଟାସୋଟା ସ୍ତ୍ରୀ ଲୋକ ସମସ୍ତଙ୍କୁ ଠେଲିଦେଇ କୁନି-ବାପାଙ୍କ ପାଖରେ ଲଥ୍‌କରି ଆସି ବସି ପଡ଼ିଲା । କୁନି କହିଲା, "ମାଲେ ଏ ମାଇପିଟାଏ !" କୁନିର ମା ତୁନି ତୁନି କହିଲେ । "ଚୁପ୍ ଚୁପ୍, ସେ କଥା କଣ କିଏ ଜାଣିନାହିଁ ?" କୁନି ଆହୁରି ପାଟି କରି କହିଲା, "ମା, ତୁ ପରା ଏଇଲେ ବାବାଙ୍କୁ କହୁଥିଲୁ ଏଇଟା କଣଟାଏ ଏମିତି ମାଡ଼ିଆସୁଛି ।"

× × ×

ବାପ ପୁଅଙ୍କ ପାଖକୁ ଯାଉଥିଲେ । ପୁଅ କଲେଜରେ ପଢ଼ନ୍ତି । ବାପାଙ୍କୁ ପାଛୋଟି ନେବାପାଇଁ ରେଲ ଷ୍ଟେଶନକୁ ଆସିଥିଲେ । ବାପା ଟ୍ରେନରୁ ଓହ୍ଲାଇଲା ମାତ୍ରେ ପୁଅ ତାଙ୍କୁ ଟଙ୍କା ମାଗିଲେ । ବାପା କହିଲେ, "ବାଃ ବେଶ୍ ଚମତ୍କାର ସମ୍ବର୍ଦ୍ଧନା ତ ! ଟ୍ରେନରୁ ଓହ୍ଲାଉ ଓହ୍ଲାଉ ସାଙ୍ଗେ ସାଙ୍ଗେ—" ପୁଅ କହିଲା, "ବାପା, ଆଜି ପରା ଟ୍ରେନ ୨୦ ମିନିଟ୍ ଲେଟ୍ (ବିଳମ୍ବ)ରେ ଆସିଛି ।"

—୦—



### କୃତ୍ରିମ ଗ୍ରହ

ଯୁକ୍ତରାଷ୍ଟ୍ର ଆମେରିକାର ବୈଜ୍ଞାନିକମାନେ ଗୋଟିଏ କୃତ୍ରିମ ଗ୍ରହ ତିଆରି କରିବା ପାଇଁ ଚେଷ୍ଟା କରୁଛନ୍ତି । ଏହା ସାହାଯ୍ୟରେ ସୈନ୍ୟମାନଙ୍କ ଖବର ଅନ୍ତରୀ ଜାଣି ହେବ । ବ୍ୟୋମପୋତ ବିଶେଷଜ୍ଞ ଉଇ-ଲିଅମ ପି.ଲିଅର କହିଛନ୍ତି ଯେ ଏହା ପ୍ରଥମ ଉଦ୍ଭାବିତ ପରମାଣୁ ବୋମାର ଶକ୍ତି ଆବଶ୍ୟକ କରିବ ।

ଆଉ ମଧ୍ୟ ଏହି ଗ୍ରହର ବ୍ୟାସ ୧୫୦ ମିଟର ହେବ ଓ ଏହା ପୃଥିବୀ ଚତୁର୍ଦ୍ଦିଗରେ ୮୦୦ କିଲୋମିଟର ଉପରେ ଘୂରିବ ।

### ବିମାନ ଚାଳନାରେ ନୂଆ ରେକର୍ଡ

ମାକ୍ସ କନ୍‌ରାଡ୍ରୋ ୨୨ ଘଣ୍ଟା ଅବିଶ୍ରାନ୍ତ ବିମାନ ଚଳାଇ ନିଉୟର୍କରୁ ପାରିସରେ ପହଞ୍ଚିଛନ୍ତି । ସେ ୨୦ ବର୍ଷ ପୂର୍ବର ରେକର୍ଡ଼କୁ ୧୦ ଘଣ୍ଟା ଅଧିକ ଟପି ଯାଇଛନ୍ତି ।

### ରେଡ଼ିଓ ଦ୍ୱାରା ଡାକ୍ତରୀ ସାହାଯ୍ୟ

ଇଂଲଣ୍ଡ ଉପକୂଳରେ କେତେଗୁଡ଼ିଏ ବେତାର ଷ୍ଟେସନ ଅଛି । ସମୁଦ୍ରରେ ଯାଉଥିବା ସମୟରେ କେହି କିଛି ରୋଗରେ ପଡ଼ିଲେ କାପ୍‌ଟେନ ଉକ୍ତ ଷ୍ଟେସନ ସାହାଯ୍ୟରେ ଡାକ୍ତରଙ୍କ ପରାମର୍ଶ ରେଡ଼ିଓ-ଟେଲି-ଫୋନ ଯୋଗେ ନେଇଥାନ୍ତି । ମାତ୍ର ଯେଉଁ ଜାହାଜରେ ସବୁ ପ୍ରକାର ସୁବିଧା ଥାଏ, ସେ ଏହି ଷ୍ଟେସନ ଜରିଆରେ ଡାକ୍ତରଙ୍କ ପରାମର୍ଶ ନ ନେଇ ଡାକ୍ତରଙ୍କ ସହ ସାଧାରଣ ଟେଲିଫୋନ ଯୋଗେ ପ୍ରତ୍ୟକ୍ଷ ପରାମର୍ଶ ନିଅନ୍ତି । ଜାହାଜରୁ ଉକ୍ତ ଷ୍ଟେସନକୁ ଜାତିନିର୍ବି-ଶେଷରେ ଏହି ଖବର ପଠାଇ ପାରନ୍ତି । ଏଥି ନିମନ୍ତେ କୌଣସି ଟଙ୍କା ପଇସା ଦେବାକୁ ହୁଏ ନାହିଁ ।

## ନୂଆ ଅଙ୍କକଷା ଯନ୍ତ୍ର

ହାଭାର୍ଡ଼ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ଅଧ୍ୟାପକ ଡଃ ବି. ଇ. ଗ୍ରିନ ଅଙ୍କ ଶିକ୍ଷା ଦେବା ନିମନ୍ତେ ଗୋଟିଏ ନୂତନ ମେସିନ୍ ଆବିଷ୍କାର କରିଛନ୍ତି । ପିଲା ତାର ପ୍ରଶ୍ନ ଏହି ଯନ୍ତ୍ରଉପରୁ ଗୋଟିଏ ଝରକାପରି ଅଂଶ ଦ୍ୱାରା ଖଣ୍ଡିଏ କାଗଜରେ ଛପା ହୋଇଥିବାର ଦେଖିପାରେ । ସେ ଯେତେବେଳେ ତାର ଉତ୍ତର ଦେବାକୁ ଇଚ୍ଛାକରେ ତେବେ ସେ ଯନ୍ତ୍ରଟି ଉପରେଲୁ ଘୂରାଇ ଦେଲେ ୦ ଠାରୁ ୯ ପର୍ଯ୍ୟନ୍ତ ସଂଖ୍ୟା ଥିବା ଅଂଶ ତା ଆଡ଼କୁ ଆସିଯାଏ । ସେ ତାର ଉତ୍ତର ପାଇବା ପାଇଁ ଗୋଟିଏ ବୋତାମ ପରି ଜିନିଷ ଘୂରାଇ ଦିଏ । ଯଦି ଉତ୍ତର ଠିକ୍ ଥାଏ, ଟିଣ୍ ଟିଣ୍ ଶବ୍ଦ ହୁଏ, ମାତ୍ର ଉତ୍ତର ଭୁଲ ଥିଲେ ଏହା ନିର୍ବିଘ୍ନରେ ଘୂରି ପାରେ-ନାହିଁ ।

## ଉଡ଼ନ୍ତା ଥାଳିଆର ଫଟୋ

ନିଉସାଉଥ ୱେଲ୍‌ସରେ ଉଡ଼ନ୍ତା ଥାଳିଆର ଫଟୋ ନିଆଯାଇଛି । ଗୋଟିଏ ଏଇଭଳି ପଦାର୍ଥ ଭୀଷଣ ଶବ୍ଦ କରି ୫୦୦ ଫୁଟ ଉଚ୍ଚରେ ଉଡ଼ୁଥିବା ସମୟରେ ତାହାର ୩ ଟି ଫଟୋ ନିଆଯାଇଛି । ଉକ୍ତ ଫଟୋଗୁଡ଼ିକ ମାଇକ୍ରୋସ୍କୋପ ଦ୍ୱାରା ବିଶେଷଜ୍ଞମାନଙ୍କ ଦ୍ୱାରା ପରୀକ୍ଷିତ ହୋଇଥିଲେହେଁ କିଛି ଜଣା ଯାଇନାହିଁ ।

## ମଙ୍ଗଳ ଗ୍ରହ

ମଙ୍ଗଳ ଗ୍ରହ ୧୫ବର୍ଷପରେ ଆସନ୍ତା ଗ୍ରୀଷ୍ମ ଋତୁରେ ପୁଣି ପୃଥିବୀର ନିକଟବର୍ତ୍ତୀ ହେବ । ସେତେବେଳେ ପୃଥିବୀଠାରୁ ଏହାର ଦୂରତ୍ୱ ହେବ ୪କୋଟି ୩୦ ଲକ୍ଷ ମାଇଲ । ସେ ସମୟରେ ବୈଜ୍ଞାନିକମାନେ ଏହା ସମ୍ବନ୍ଧରେ ସବିଶେଷ ତଥ୍ୟ ଜାଣିବାପାଇଁ ଚେଷ୍ଟା କରୁଛନ୍ତି ।

## ଗ୍ରହାନ୍ତର ଯାତ୍ରା ଚଳଚ୍ଚିତ୍ର

ଗତ ୧୦୦ ବର୍ଷମଧ୍ୟରେ ଗ୍ରହାନ୍ତର ଯାତ୍ରା ପାଇଁ ଯେଉଁ ବୈଜ୍ଞାନିକ ପ୍ରଚେଷ୍ଟା ହୋଇଛି, ତାର ଗୋଟିଏ ଚଳଚ୍ଚିତ୍ର ପ୍ରସ୍ତୁତ କରିବା ପାଇଁ ଯୋଗାଡ଼ ଚାଲିଛି । ଏଥିରେ 'ବୁଧଗ୍ରହକୁ ଯାତ୍ରା'ର ଦୃଶ୍ୟ ପ୍ରଦର୍ଶିତ ହେବ ।

—୦—

## ଅଛୁଆଁ

ଶ୍ରୀ ଯଦୁନାଥ ଦାଶ ମହାପାତ୍ର
ବି.ଏ. (ଅନର୍ସ), ଏଲ୍.ଏଲ୍.ବି.

କାହାକୁ କୁହ ଅଛୁଆଁ ବୋଲି
କାହାକୁ କୁହ ସାନ ।
ତାହାକୁ କିଆଁ ଛୁଇଁଲେ କୁହ
କମିବ ଆମ ମାନ ?
ପାଣି ଓ ହାଡ଼ ଅଛବି ଯେତେ
ଆମରି ଭଇ ନିକ
ତାହାଙ୍କୁ କିଆଁ ଛୁଇଁଲେ କୁହ
ଧୋଇବି ଲୁଗାଟିକ ?
ଆମରି ପାଇଁ ସେମାନେ ଯେତେ
କରନ୍ତି ହୀନ କାମ,
ସେ ସବୁ ଭୁଲି ଆମେହିଁ ତାଙ୍କୁ
ଦେଉଛେ ଅପମାନ ।
ଆମକୁ ସଫା- ସୁତୁରା ରଖି
ସେମାନେ ହେଲେ ଶ୍ରେଷ୍ଠ,
ତାହାଙ୍କୁ ଦେଖି ଆମେ ରେ କିଆଁ
ଭାଙ୍ଗିବା ଦୂରୁ ବାଟ ?
ଭଗବାନଙ୍କ ସନ୍ତାନ ତ
ଆମେ ଓ ହରିଜନ,
ତାହାଙ୍କୁ କିଆଁ ଛୁଇଁଲେ କୁହ
ଯିବରେ ଆମ ମାନ ?

—୦—

## ଖାପ୍‌ଛଡ଼ା ଚିନ୍ତା

ଲେ—ବାପୁ

ପାରଳା ଗଣ୍ଡଗୋଳର ପ୍ରତିବାଦ ସ୍ୱରୂପ ଦେଶରେ ଏଣିକି ବିକ୍ଷୋଭ ଓ ହରତାଳ ପାଳିତ ହୋଇଗଲା —ତେଣୁ ବାପୁ, ଯେ କି ସହଜରେ ବାଆ କଲେ ବୋହଲୁଥାଏ, ଚୁପ୍ ରହିବ କିପରି ? ବିଳମ୍ବରେ ହେଲେ ସୁଦ୍ଧା ସେ କିଛି ସମୟ ହରତାଳ ପାଳନ କରି ତାର ପ୍ରତିବାଦ ଜଣାଉଛି ।



⁕

ଯେ କୌଣସି ପ୍ରକାର ବିପତ୍ତି ବା ଗଣ୍ଡଗୋଳ ହେଉ, ତାହା ଖବର କାଗଜବାଲାଙ୍କୁ ଖୁବ୍ ସୁହାଏ । ରୋଗ ବଢ଼ିଲେ ଡାକ୍ତରମାନେ ନିଶ୍ଚୟ ଖୁସୀ ହେଉଥିବେ । ସେହିପରି ଖବର ଯେତେ ଚମକପ୍ରଦ ହେବ, ଖବର କାଗଜର କାଟତି ସେତେ ବଢ଼ିବ । ଦୈବୀ ବିପତ୍ତି ଅପେକ୍ଷା ମନୁଷ୍ୟକୃତ ଗଣ୍ଡଗୋଳ ବେଶୀ ଚମକପ୍ରଦ । ସେଥିପାଇଁ ବନ୍ୟା, ଭୂମିକମ୍ପ, ଦୁର୍ଭିକ୍ଷ ଅପେକ୍ଷା ଯୁଦ୍ଧ ସମ୍ବାଦର ନିଶା ବେଶୀ । ଆମ ଓଡ଼ିଶାରେ କେତେ ଦିନ ହେଲା ରାଜନୀତି ବଜାର ଟିକିଏ ମାନ୍ଦା ପଡ଼ି ଯାଇଛି । **Walk-out** ଓ ଜିନ୍ଦାବାଦ୍ ଇତ୍ୟାଦି ସେତେ ଶୁଣିବାକୁ ମିଳୁ ନାହିଁ—ଖବରକାଗଜ ଗୁଡ଼ାକ ଅଲଣା ଲାଗୁ ଛି । ମଝିରେ ମଝିରେ ସେଥିପାଇଁ ପୁରୀରେ ହରଣି, କଟକ କାଳିଆବୋଦାରେ ଗୁଣ୍ଡନ, ପାରଳାରେ ମିଶାଣ ଓ ବାଲେଶ୍ୱର ଡକାଏତମାନଙ୍କର ଫେଡ଼ାଣ—ଏପରି ଟିକିଏ ଟିକିଏ ଚଟଣୀ ନ ମିଳୁଥିଲେ ଖବରକାଗଜ ପଢ଼ୁଆମାନଙ୍କୁ ସ୍ୱଗ୍ର ଉପାସରେ ପଡ଼ିବାକୁ ହୋଇଥାନ୍ତା ।

⁕

ପ୍ରଧାନ ମନ୍ତ୍ରୀ ନେହେରୁ ପୁଣି ହଲାଣ୍ଡର ପିଲାଙ୍କୁ ଗୋଟିଏ ହାତୀ ଦାନ କରିଛନ୍ତି । ଅଥଚ ସେ ଦିନ ଖବର କାଗଜରେ ବାହାରିଲା ଯେ ସେ କପେ ଚା ଖାଇବାକୁ ପକେଟ ଦରାଣ୍ଡି ଦରାଣ୍ଡି ପଇସା ପାଉ ନଥାଏ ବି ପାଇଲେ ନାହିଁ । କବିସୂର୍ଯ୍ୟ ଥିଲେ କହିଥାନ୍ତେ—

‘ହାତୀ ବିତରଣ କରି ଯାଚକେ
ଜାତି କୃପଣ ବୋଲାଇଲେ ଲୋକେ
କାହାକୁ କହିବା,
କପାଳରେ ଥିବା କରି ତାଡିବା’ ।

⁕

ଉଡ଼ନ୍ତା ଥାଳିଆ ଫ୍ରାନ୍ସରୁ ଉଡ଼ି ଉଡ଼ି ପାରସ୍ୟ ଆସିଲା, ସେଠାରୁ ସିଧା ଆସି ଆମ ନୂଆ ରାଜଧାନୀ ଭୁବନେଶ୍ୱରରେ ଉପସ୍ଥିତ ! ସେଠାରେ କୁଆଡ଼େ ଅନେକ ଲୋକ ରାତି ୧୦ ଟା ବେଳେ ଗୋଟାଏ ଉଜ୍ଜ୍ୱଳ ପଦାର୍ଥ ଆକାଶରେ ପୂର୍ବପଟୁ ପଶ୍ଚିମକୁ ଅତି ଦ୍ରୁତ ବେଗରେ ଉଡ଼ି ଯାଉଥିବାର ସ୍ପଷ୍ଟ ଦେଖିଛନ୍ତି ।

ଅଳ୍ପ ଦିନ ତଳେ ଫିନ୍‌ଲାଣ୍ଡର କୌଣସି ଏକ ସହରରେ କେତେକ ଲୋକ ରାତି ପ୍ରାୟ ୯ ଟା ବେଳେ ଏହିପରି ଏକ ଉଜ୍ଜ୍ୱଳ ଆଲୋକ ଆକାଶରେ ଉଡ଼ୁଥିବାର ଦେଖି ତାକୁ ମଙ୍ଗଳ ଗ୍ରହାଗତ କୌଣସି ଅଦ୍ଭୁତ ମନୁଷ୍ୟ ବିଚରୁଥିବା ବେଳେ ଜଣାପଡ଼ିଲା ଯେ, ଉଡ଼ନ୍ତା ଆଲୁଅଟି ଗୋଟିଏ କୁଆ । ଜଣେ ସ୍ତ୍ରୀ ଲୋକ ଗୋଟିଏ ପୋଷା କୁଆ ଗୋଡ଼ରେ ଟର୍ଚ୍ଚଟିଏ ବାନ୍ଧି ତାକୁ ସେପରି ରାତିରେ ଛାଡ଼ି ଦେଇଥିଲା । ସେ ପୂର୍ବରୁ କୁଆଡ଼େ ଏହିପରି ତାକୁ ଟର୍ଚ୍ଚସହ ଉଡ଼ିବା ଶିଖାଇଥିଲା ଏବଂ ସେଦିନ ତାହା ପରୀକ୍ଷା କରୁଥିଲା । ଭୁବନେଶ୍ୱର ବ୍ୟାପାର ସେପରି ନ ହୋଇଥିଲେ ରକ୍ଷା !

⁕

ପ୍ରଧାନ ମନ୍ତ୍ରୀ ନେହେରୁ ଚୀନଗସ୍ତରୁ ଫେରି ପାର୍ଲ୍ଲିମେଣ୍ଟରେ ତାଙ୍କ ଅନୁଭୂତି ବର୍ଣ୍ଣନା କରୁ କରୁ କହିଲେ 'ମୁଁ ଦେଖିଲି—ମି.ଗୃଭ.ଏନ୍.ଲାଇ ଏଠାରେ ଯେମିତି ଦେଖି ଯାଇଥିଲେ—ଚୀନରେ ଇତିହାସ ଗଢ଼ାଯାଉଛି ।'

ବାପ୍ସା କୌଣସି ଗସ୍ତରେ ନ ଯାଇ ମଧ୍ୟ ତାରି ବସାରେ ଝୁଲି ଝୁଲି ଦେଖୁଛି ଗୃରିଆଡ଼େ କେବଳ ଇତିହାସ ! କେବଳ ଯେ ଗଢ଼ାଯାଉଛି ତା ନୁହେଁ, ଇସ୍କୁଲରେ ପଢ଼ାଯାଉଛି, ମାଟିତଳୁ ତଡ଼ାଯାଉଛି, ଆକାଶରେ ଉଡ଼ାଯାଉଛି, ଆସେମ୍ବ୍ଲିରେ ଲଢ଼ାଯାଉଛି, ପୁଣି ଟି'ପାର୍ଟି ମାନଙ୍କରେ ବଢ଼ାଯାଉଛି ! ସେ ସବୁ ଇତିହାସ ! ପୁରାପୁରି ଇତିହାସ !!

*

ଆନ୍ଧ୍ରନେତା ଶ୍ରୀ ଟି.ପ୍ରକାଶମ୍ ଓଡ଼ିଶାକୁ ଆସି ବୁଲି ଯାଇଛନ୍ତି । ପାରଳାରେ ଯେଉଁ ଗଣ୍ଡଗୋଳ ଲାଗି ଗଲା, ତା ମୂଳରେ ଆନ୍ଧ୍ରଓଡ଼ିଆ ବିବାଦ ଅଛି ବୋଲି ଅନେକେ ମନେ କରୁଛନ୍ତି । ଏ ସମ୍ପର୍କରେ କହିବାକୁ ଯାଇ ସେ କହିଲେ, ଗତ "୩୦ ବର୍ଷ ଭିତରେ ମୁଁ ଏହିପରି ଅନେକ ଗଣ୍ଡଗୋଳର ସମ୍ମୁଖୀନ ହୋଇଛି—କୌଣସି ଘଟଣା ମୋତେ ବିଚଳିତ କରି ପାରିନାହିଁ ।"

ଆମ ଭୂମପରି ଲୋକ ସିନା ଟିକିଏ କଥାରେ ବିଚଳିତ ହୋଇଯାନ୍ତି । ବଡ଼ବଡ଼ିଆ ଯଦି ସେମିତି ହେବେ, ତେବେ ନେତା ହେବେ କପରି ? ଆମେ ସ୍ଥିରଧୀ ଆନ୍ଧ୍ର ନେତାଙ୍କ ଥଣ୍ଡା ମିଜାଜ୍‌କୁ ଶତ ମୁଖରେ ପ୍ରଶଂସା କରୁଛୁ ।

---

# ସତ୍ୟମୂର୍ତ୍ତି ନଗର

ଭାରତ ଜାତୀୟ କଂଗ୍ରେସର ୬୦ତମ ବାର୍ଷିକ ଅଧିବେଶନ ମାଦ୍ରାଜର ଆଭାଡ଼ିଠାରେ ଆସନ୍ତା ଜାନୁଆରି ମାସ ୧୭ ତାରିଖରେ ବସୁଛି । ଉକ୍ତ ସ୍ଥାନର ନାମ ସ୍ୱର୍ଗତଃ ସତ୍ୟମୂର୍ତ୍ତିଙ୍କ ନାମାନୁଯାୟୀ ସତ୍ୟମୂର୍ତ୍ତି ନଗର ରଖାଯାଉଛି ।

ଅଧିବେଶନ ନିମନ୍ତେ ସଭାମଣ୍ଡପ ତିଆରି କାର୍ଯ୍ୟ ଖୁବ ଜୋରସୋରରେ ଗୃଲିଛି । ଏହି ସଭାରେ ୩ଲକ୍ଷ ଲୋକ ବସିବା ନିମନ୍ତେ ବ୍ୟବସ୍ଥା ହେଉଛି । ବର୍ତ୍ତମାନ ୧୦୦୦ ଲୋକ ଏହି ସଭା ମଣ୍ଡପ ତିଆରି କରିବାରେ ଲାଗିଛନ୍ତି । ଆଉ ୧୧୦୦୦ ଲୋକ ସତ୍ୟମୂର୍ତ୍ତିନଗରକୁ ଯିବା ନିମନ୍ତେ ରାସ୍ତା ଘାଟ ମରାମତି କରିବାରେ ଓ ଅନ୍ୟାନ୍ୟ ଘର ତିଆରି କରିବାରେ ଲାଗିପଡ଼ିଛନ୍ତି । ରାସ୍ତାମାନଙ୍କରେ ମଧ୍ୟ ଗ୍ଲାଇ ହେବା ପାଇଁ ବ୍ୟବସ୍ଥା କରାଯାଉଛି ।

ଏଠାରେ ୩୦୮୦ ପ୍ରତିନିଧି ଓ ୫୦୦୦ ଦର୍ଶକଙ୍କ ରହିବା ନିମନ୍ତେ ବ୍ୟବସ୍ଥା ହେଉଛି । ଏହି ଅଧିବେଶନରେ ପ୍ରାୟ ୧୦ ଲକ୍ଷ ଟଙ୍କା ଖର୍ଚ୍ଚ କରାଯିବ । ନେତୃସ୍ଥାନୀୟ ଲୋକ ଓ ପ୍ରତିନିଧିମାନଙ୍କ ନିମନ୍ତେ ୮୫ ଏକର ସ୍ଥାନରେ ରହିବା ବ୍ୟବସ୍ଥା ହେଉଛି । ଏଥିପୂର୍ବରୁ ଏପରି ବ୍ୟବସ୍ଥା ଅନ୍ୟ କେଉଁଠାରେ ହୋଇ ନ ଥିଲା ।

୬୦ ତମ ଅଧିବେଶନ ଉପଲକ୍ଷେ ୬୦ଟି କାରୁକାର୍ଯ୍ୟ-ଖଚିତ ଖିଲାଣ ତିଆରି ହେଉଛି । ଏଥିରେ କଂଗ୍ରେସର କ୍ରମୋନ୍ନତି ପ୍ରଦର୍ଶିତ ହେବ ଏବଂ ପ୍ରତି ଖିଲାଣରେ ପ୍ରତିବର୍ଷର କଂଗ୍ରେସ ସଭାପତିଙ୍କ ପ୍ରତିମୂର୍ତ୍ତି ରଖାଯିବ ।

ଗମନାଗମନର ସୁବିଧା ପାଇଁ ପ୍ରଧାନ ରେଲପଥରୁ ଦୁଇଟି କ୍ଷୁଦ୍ର ରେଲପଥ ଏଠାକୁ ନିଆ ଯାଉଛି । ପ୍ରତି ୧୫ ମିନିଟରେ ଆଭାଡ଼ି ଓ ମାଦ୍ରାଜ ମଧ୍ୟରେ ରେଲ ଚଳାଚଳ ହେବ ।

ପ୍ରତିନିଧିମାନଙ୍କ ନିମନ୍ତେ ସମସ୍ତପ୍ରକାର ସୁବିଧା କରାଯାଇଛି । ଏପରିକି ୧୨ଟି ସିଟ୍ ଥିବା ଗୋଟିଏ ଡାକ୍ତରଖାନା ସେଠାରେ ଖୋଲା ଯାଇଛି । ଖାଦ୍ୟ-ପେୟ ନିମନ୍ତେ ଉଚ୍ଚଧରଣର ମେସ୍‌ର ସୁବିଧା ମଧ୍ୟ କରାଯାଇଛି ।

( ୩୨ ପୃଷ୍ଠା ଦେଖନ୍ତୁ )



# ଓଡିଶା ଖବର

ତା ୭ । ୧୧—ପ୍ରଜା ସୋସାଲିଷ୍ଟ ଦଳର ଚେୟାରମ୍ୟାନ ଆଚାର୍ଯ୍ୟ ଜେ. ବି. କୃପାଲିନୀଙ୍କ କଟକ ଆଗମନ ଓ ରେଭେନ୍‌ସା କଲେଜରେ ଭାଷଣ ।

ତା ୨୨—ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାର-ଲାଲ ନେହେରୁ ଆସନ୍ତା ଡିସେମ୍ବର ୧୦ ତାରିଖରେ ଓଡ଼ିଶା ଆସୁଛନ୍ତି । ସେ ୧୦ ତାରିଖରେ କଟକ ଆସି ସମ୍ବଲପୁରରେ ହେଉଥିବା ରାଜନୈତିକ ସମ୍ମିଳନୀ ଉଦ୍‌ଘାଟନ କରିବା ପାଇଁ ଯିବେ ।

ତା ୨୮—ସମ୍ବଲପୁରର ସୁରେନ୍ଦ୍ରସାଏ ନଗରରେ ଡିସେମ୍ବର ୧୦, ୧୧ ଓ ୧୨ ତାରିଖ ୩ ଦିନ ଧରି ଉତ୍କଳ କଂଗ୍ରେସର ରାଜନୈତିକ ସମ୍ମିଳନୀ ବସିବ ।

# ଭାରତ ଖବର

ତା ୨ । ୧୧—ଦୀର୍ଘ ୩୦୦ ବର୍ଷର ଫରାସୀ ଶାସନ ଆଜିଠାରୁ ଭାରତରୁ ଲୋପ ପାଇଲା ।

ତା ୭—ଅବିଶ୍ୱାସ ପ୍ରସ୍ତାବ ଧାର୍ଯ୍ୟ ହେବା ଯୋଗୁଁ ଆନ୍ଧ୍ର ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲେ ।

ତା ୮— ଆଗାମୀ କଂଗ୍ରେସ ଅଧିବେଶନ ଆଭାଦିଠାରେ ଜାନୁଆରି ୧୭ ତାରିଖରୁ ୨୩ତାରିଖ ପର୍ଯ୍ୟନ୍ତ ବସିବ ।

—ସୌରାଷ୍ଟ୍ରର ମୁଖ୍ୟ ମନ୍ତ୍ରୀ ଶ୍ରୀ ୟୁ.ଏନ୍.ଧେବର ଆସନ୍ତା ଜାନୁୟାରିଠାରୁ କଂଗ୍ରେସ ସଭାପତି ହେବେ ।

ତା ୧୨—ରାଜସ୍ଥାନରେ ମୋହନଲାଲ ସୁଖ-ଡିଆଙ୍କ ନେତୃତ୍ୱରେ ନୂତନ ମନ୍ତ୍ରୀମଣ୍ଡଳ ଗଠିତହେଲା ।

—୫ ଲକ୍ଷ ସ୍ୱେଚ୍ଛାସେବକଙ୍କୁ ନେଇ ଭାରତ ସରକାର ଏକ ନୂଆ ଜାତୀୟ ସ୍ୱେଚ୍ଛାସେବକବାହିନୀ ଗଢ଼ିବା ପାଇଁ ନିଷ୍ପତ୍ତି କରିଅଛନ୍ତି । ଏମାନଙ୍କୁ ସାମରିକ ଶିକ୍ଷା ସଙ୍ଗେ ସଙ୍ଗେ ଅଧିକ ଶୃଙ୍ଖଳାଜ୍ଞାନ ଶିକ୍ଷା ଦିଆଯିବ ।

ତା ୧୪—ପଣ୍ଡିତ ନେହେରୁଙ୍କ ୬୬ ତମ ଜନ୍ମ ଦିବସ ଭାରତର ସର୍ବତ୍ର ମହା ସମାରୋହରେ ପାଳିତ ହେଲା ।

ତା ୧୫—ଭାରତ ପାର୍ଲାମେଣ୍ଟର ଲୋକସଭା ବୈଠକ ଆରମ୍ଭ ହେଲା ।

—ଗୁଜୁରାଟର ଆନନ୍ଦଠାରେ ଭାରତର ସର୍ବ ବୃହତ୍ ଓ ପ୍ରଥମ ଦୁଗ୍ଧ ଓ ଦୁଗ୍ଧଜାତ ପଦାର୍ଥ ଉତ୍ପାଦନ କେନ୍ଦ୍ର ପ୍ରତିଷ୍ଠା କରାଗଲା ।

ତା୨୫—ପୁନର୍ବସତି ମନ୍ତ୍ରୀ ଶ୍ରୀ ଅଜିତ୍ ପ୍ରସାଦ ଜୈନ ନୂଆ ଖାଦ୍ୟ ଓ କୃଷି ମନ୍ତ୍ରୀ ହେଲେ । ଆଉ ମଧ୍ୟ ମନ୍ତ୍ରୀମଣ୍ଡଳରେ କେତେକ ପରିବର୍ତ୍ତନ ହେବ ବୋଲି ଜଣାଯାଇଛି ।

ତା୨୮—ଶ୍ରୀ ବିଜନକୁମାର ମିତ୍ର ଶ୍ରୀ ମେହେରଚାନ୍ଦ ମହାଜନଙ୍କ ପରେ ଭାରତ ସୁପ୍ରିମ କୋର୍ଟର ପ୍ରଧାନ ବିଚାରପତି ନିଯୁକ୍ତ ହେବେ । ସେ ଡିସେମ୍ବର ୨୨ ତାରିଖରେ ଶପଥ ଗ୍ରହଣ କରିବେ ।

— ଆଚାର୍ଯ୍ୟ ନରେନ୍ଦ୍ରଦେବ ପ୍ରଜା-ସୋସାଲିଷ୍ଟ ପାର୍ଟିର ଚେୟାରମାନ ନିର୍ବାଚିତ ହେଲେ ।

# ବିଦେଶ ଖବର

ତା ୪ । ୧୧—ଆସନ୍ତା ଜାନୁୟାରି ମାସରେ ଲଣ୍ଡନଠାରେ ରାଜ୍ୟଗୋଷ୍ଠୀ ସମ୍ମିଳନୀ ବସିବ ।

ତା ୭—ଚଳିତ ମାସରେ ଆମେରିକା ଯୁକ୍ତ-ରାଷ୍ଟ୍ରରେ ହୋଇଥିବା ନିର୍ବାଚନରେ ଡେମୋକ୍ରାଟିକ ଦଳ ରିପବ୍ଲିକାନ ଦଳକୁ ପରାଜିତ କରି ପ୍ରତିନିଧି ସଭା ଓ ସିନେଟରେ ସଂଖ୍ୟାଗରିଷ୍ଠ ହୋଇଛନ୍ତି ।

ତା ୧୧—ପାରସ୍ୟର ପୂର୍ବତନ ବୈଦେଶିକ ମନ୍ତ୍ରୀ ହୋସେନ୍ ଫାତେମୀଙ୍କୁ ରାଷ୍ଟ୍ରଦ୍ରୋହ ଅଭିଯୋଗରେ ପ୍ରାଣଦଣ୍ଡ ଦିଆଗଲା । ଗୁଳି କରାଯାଇ ତାଙ୍କର ଜୀବନ ନିଆଗଲା ।

ତା ୧୫—ମିଶରର ପ୍ରେସିଡେଣ୍ଟ ଜେନେରାଲ ନେଜିବ ପ୍ରେସିଡେଣ୍ଟ ପଦରୁ ବିତାଡ଼ିତ ହେଲେ ।

—ମେରୁ ଉପର ଦେଇ ପ୍ରଥମେ ଆମେରିକାରୁ ଇଉରୋପକୁ ଉଡ଼ାଜାହାଜ ସର୍ଭିସ ଚାଲିଲା ।

ତା ୨୨— ରୁଷିଆର ବରିଷ୍ଠ କୂଟନୀତିଜ୍ଞ ଏମ. ଏ. ଭିସିନସ୍କିଙ୍କର ହୃଦ୍‌ରୋଗରେ ମୃତ୍ୟୁ ଘଟିଲା ।

—ଜଣାଯାଇଛି ଯେ ପାକିସ୍ଥାନ ପୂର୍ବ ଓ ପଶ୍ଚିମ ଏହିପରି ୨ଟି ପ୍ରଦେଶରେ ବିଭକ୍ତ ହେବ ।

—୦—

## ବିଜ୍ଞାନ-ପତ୍ରିକା

୧ । ଆନ୍ତର୍ଜାତିକ ବିଜ୍ଞାନ ପ୍ରେସ ସର୍ଭିସର ଏକ ରିପୋର୍ଟରୁ ଜଣାଯାଇଛି ଯେ କଳା ଓ ବିଜ୍ଞାନରେ ସାଧାରଣତଃ ଜୀବନର ୪ର୍ଥ ଦଶବର୍ଷ ଅର୍ଥାତ୍ ୩୦ ରୁ ୪୦ ବର୍ଷ ମଧ୍ୟରେ ଉତ୍କର୍ଷ ସାଧିତ ହୋଇଥାଏ । ରସାୟନ ବିଦ୍ୟାବିତ୍, ପଦାର୍ଥ ବିଦ୍ୟାବିତ୍ ଓ ଜୀବ ବିଜ୍ଞାନ-ବିତ୍ ମାନଙ୍କର ୩୦ ରୁ ୩୫ ବର୍ଷ ମଧ୍ୟରେ ସର୍ବୋତ୍କର୍ଷ ସାଧିତ ହୋଇଥାଏ । ଗାଣିତିକ, ଦାର୍ଶନିକ ଓ ରାଜନୀତି ବୈଜ୍ଞାନିକମାନଙ୍କ କାର୍ଯ୍ୟ ୩୫ ରୁ ୪୦ ବର୍ଷ ମଧ୍ୟରେ ବିକାଶ ଲାଭ କରିଥାଏ । କଳାବିଦ୍ୟା, ସାହିତ୍ୟ ଓ ସଂଗୀତରେ ସାଧାରଣତଃ ୨୨ ଠାରୁ ୪୪ ବର୍ଷ ମଧ୍ୟରେ ବିକାଶ ସାଧିତ ହୋଇଥାଏ । ଏଥିମଧ୍ୟରୁ ୩୨ ରୁ ୩୪ ବର୍ଷ ମଧ୍ୟରେ ତୈଳଚିତ୍ର, ୪୦ ରୁ ୪୪ ମଧ୍ୟରେ ଉପନ୍ୟାସ ଲେଖିବା ଓ ୩୦ ରୁ ୩୪ ମଧ୍ୟରେ ସ୍ୱର ସଙ୍ଗୀତରେ ବିକାଶ ଲାଭ ହୋଇଥାଏ । ରାଜନୀତି, ଧର୍ମ ଇତ୍ୟାଦିରେ ନେତୃତ୍ୱ ନେବା ପାଇଁ ବହୁତ ଅଭିଜ୍ଞତା ଆବଶ୍ୟକ । ଏଥିରେ ସାଧାରଣତଃ ୫୦ ବର୍ଷ ପରେ ବିକାଶ ଲାଭ ହୋଇଥାଏ ।

୨ । ଭାରତରେ ୧୫ ଲକ୍ଷ କୁଷ୍ଠ ରୋଗୀ ଅଛନ୍ତି । ଏମାନଙ୍କ ମଧ୍ୟରୁ ସାଢ଼େ ତିନିଲକ୍ଷ ସଂକ୍ରାମକ ରୋଗୀ ଅଟନ୍ତି ।

—୦—

# ଏତିକି ମୋତେ ଦିଅ

ଶ୍ରୀ ଲୋକନାଥ ମୁଣ୍ଡି

ମାଗୁଛି ଭିକ୍ଷା ଦିଅ ହେ ପ୍ରଭୁ ଏତିକି ମୋତେ ଦିଅ,
ଜୀବନୁ ମୋର ପାପକାଳିମା ଧୋଇନିଅ ଧୋଇନିଅ,
ହେ ପ୍ରଭୁ, ଏତିକି ମୋତେ ଦିଅ ।

ଯା'ବଳେ ଆସେ ଶୁଭ ସୁବୁଦ୍ଧି ସେ ପଥ କହିଦିଅ,
ଯା'ବଳେ ଆସେ ଧୈର୍ଯ୍ୟ ବିପଦେ ସେ ବାଟ କୁହ କୁହ
ଯେ' ବାଟେ ଗଲେ ସୁଧା ଝରଣା ତୁମେ ଛୁଟାଇ ଦିଅ'
ଯେ' ବାଟେ ଗଲେ ଦୁଃଖ ଯନ୍ତ୍ରଣା ତୁମେ ଉଠାଇ ନିଅ
ସେ ବାଟ ପାଇଁ ମାଗୁଛି ବଳ ମାୟା ନ କରି କୁହ,
ମାଗୁଛି ଭିକ୍ଷା ତବ ପଦ୍ମରେ ଏତିକି ମୋତେ ଦିଅ
ହେ ପ୍ରଭୁ, ଏତିକି ମୋତେ ଦିଅ ।

ଜୀବନ ମୋର ତମସା ଘୋର ତୁମ ଆଲୋକ ଦିଅ
ଜୀବନେ ରହି ରୁହାଅ ଦୂରେ କଣ୍ଠେ ମନ୍ତ୍ର କୁହ
ସରଗ ପରି ପ୍ରଶାନ୍ତ ହୁଏଁ, ଧରଣୀ ହେଉ ଦେହ
ସତ୍ ପଥରେ ଚଳାଅ ପ୍ରଭୁ, କରାଅ ଲୋକପ୍ରିୟ !
ସତ୍ୟ ଅହିଂସା ଅସ୍ତ୍ର ଦିଅ ସେବାରେ ବଳ ଦିଅ,
ମାଗୁଛି ଭିକ୍ଷା ତବ ପଦ୍ମରେ ଏତିକି ମୋତେ ଦିଅ ।
ହେ ପ୍ରଭୁ, ଏତିକି ମୋତେ ଦିଅ ।

—୦—

( ୨୯ ପୃଷ୍ଠାର ଅବଶିଷ୍ଟାଂଶ )

ପ୍ରତିନିଧିମାନେ ରହିବା ସ୍ଥାନରେ କୌଣସି ପୋଲିସ୍ ରହିବେ ନାହିଁ; ମାତ୍ର ୨୦୦୦ ସ୍ୱେଚ୍ଛାସେବକ ନିଯୁକ୍ତ ହେବେ । ଏମାନଙ୍କ ମଧ୍ୟରେ ୭୫୦ ଜଣ ସ୍ୱେଚ୍ଛାସେବିକା ନିଯୁକ୍ତ ହେବେ । ନିଖିଳ ଭାରତ ଜାତୀୟ କଂଗ୍ରେସ କମିଟି ମଧ୍ୟ ୨୫୦ ଜଣ ସେବାଦଳ ସ୍ୱେଚ୍ଛାସେବକ ଯୋଗାଇବେ ।

ସଭାମଣ୍ଡପ ଉପରେ ୧୫୦୦ ଜଣ ବସି ପାରିବେ । ସଭାସ୍ଥଳୀ ୨୨ ଏକର ପରିମିତ ଅଟେ । ଏଠାରେ ମଧ୍ୟ ବିଷୟନିର୍ବାଚନ ସଭା ଓ କାର୍ଯ୍ୟକାରୀ କମିଟି ନିମନ୍ତେ ସ୍ୱତନ୍ତ୍ର ମଣ୍ଡପ ତିଆରି ହେଉଛି ।

ଅଧିବେଶନ ସ୍ଥାନର ୨୦ ମାଇଲ ଦୂରବର୍ତ୍ତୀ ଟେନାପେଣ୍ଟ ନାମକ ସ୍ଥାନରେ ଗୋଟିଏ ପ୍ରଦର୍ଶନୀ ଉନ୍ମୋଚିତ ହେବ । ଏହା ପ୍ରାୟ ୪୨ ଏକର ବିଶିଷ୍ଟ ଏକ ସ୍ଥାନରେ ହେବ ଏବଂ ଏଥିରେ ୧୫୦୦ଟି ଷ୍ଟଲ ଖୋଲାଯିବ । ଏଥିରେ ଭାରତ ସରକାର ଏବଂ ମାନ୍ଦ୍ରାଜ, ଜାମୁ ଓ କାଶ୍ମୀର, ବିହାର, ମଧ୍ୟ ପ୍ରଦେଶ, ଉତ୍ତର ପ୍ରଦେଶ ଓ ଆସାମ ପ୍ରାଦେଶିକ ସରକାରଙ୍କ ତରଫରୁ ଷ୍ଟଲମାନ ଖୋଲାଯିବ । ସର୍ବୋଦୟ ଆନ୍ଦୋଳନର ଆଦର୍ଶ ଓ ଲକ୍ଷ୍ୟ କଣ ତା ବିଷୟରେ ମଧ୍ୟ ନାନାବିଧ ତଥ୍ୟ ଚିତ୍ର ସାହାଯ୍ୟରେ ପ୍ରଦର୍ଶିତ ହେବ । ବାଙ୍ଗାଲୋର ଉଡ଼ାଜାହାଜ କାରଖାନା ଆନୁକୂଲ୍ୟରେ ଏଠାରେ ଗୋଟିଏ ସ୍ଥାନରେ ଉଡ଼ାଜାହାଜ ତିଆରି ପ୍ରଣାଳୀ ପ୍ରଦର୍ଶିତ ହେବ ।

—o—

## ଦରକାର ବେଳେ କାମରେ ଆସିବ

୧ । ଭାରତୀୟ ରେଲବାଇରେ ଗଲା ନଭେମ୍ବର ୧୫ ତାରିଖଠାରୁ ତୃତୀୟ ଶ୍ରେଣୀ ରେଲ ଯାତ୍ରୀଙ୍କ ପାଇଁ ଶୋଇବା ବ୍ୟବସ୍ଥା କରାଗଲା । ଏ ବ୍ୟବସ୍ଥା ବର୍ତ୍ତମାନ ଦିଲ୍ଲୀ-ହାଵଡ଼ା ଜନତା ଏକ୍‌ସପ୍ରେସ, ମାନ୍ଦ୍ରାଜ-ଦିଲ୍ଲୀ ଜନତା ଏକ୍‌ସପ୍ରେସ୍ ଓ ବମ୍ବେ ଦିଲ୍ଲୀ ମଧ୍ୟରେ ଚାଲୁଥିବା ଡେରାଡୁନ ଏକ୍‌ସପ୍ରେସ୍‌ରେ ଚାଲୁ କରାଯାଇଛି । ପ୍ରତ୍ୟେକ ଗାଡ଼ିରେ ୫୪ଟି କରି ଶୋଇବା ସ୍ଥାନ ରଖାଯାଇଛି । ଏହି ସ୍ଥାନ ପାଇଁ ୩ଦିନ ପୂର୍ବରୁ ସ୍ଥାନ ରିଜର୍ଭ କରିବାକୁ ହେବ । ପୂରା ବା ଆଂଶିକ ରାତି ପାଇଁ ଜଣ ପିଛା ୫୩୯ ଅଧିକା ଦେବାକୁ ପଡ଼ିବ ।

୨ । ଏ ବର୍ଷ ରସାୟନବିଦ୍ୟାରେ କାଲିଫର୍ଣ୍ଣିଆର ଡଃ ଲିନଅସ୍ ପଲିଙ୍ଗ୍ ନୋବେଲ ପୁରସ୍କାର ପାଇଛନ୍ତି । ଆଉ ମଧ୍ୟ ପଦାର୍ଥ ବିଜ୍ଞାନରେ ଜର୍ମାନର ଦୁଇଜଣ ପ୍ରଫେସର ବ୍ୟୋଟ୍‌ରବଥ ଓ ମାକ୍‌ସ ବର୍ଣ୍ଣ ଚଳିତ ବର୍ଷର ନୋବେଲ ପୁରସ୍କାର ପାଇଲେ ।

୩ । ହଲିଉଡ଼ର ଚଳଚ୍ଚିତ୍ର ନିର୍ମାଣ ଡିରେକ୍‌ଟର ମହାତ୍ମା ଗାନ୍ଧିଙ୍କର ଜୀବନୀର ଗୋଟିଏ ଚଳଚ୍ଚିତ୍ର ନିର୍ମାଣ କରିବା ପାଇଁ ସ୍ଥିର କରିଛନ୍ତି । ଏହି ଚଳଚ୍ଚିତ୍ରଟି ପ୍ରସ୍ତୁତ ହେବା ପାଇଁ ପ୍ରାୟ ୧ବର୍ଷ ସମୟ ଲାଗିବ । ସେ ଏ ବିଷୟରେ ଭାରତ ସରକାରଙ୍କ ସହ କଥାବାର୍ତ୍ତା ମଧ୍ୟ କରିଛନ୍ତି ।

—o—

## ବିଶ୍ୱାସ କର ବା ନ କର

୧ । ୪୧୪୩୩୩ଟି ମାଛିର ମିଳିତ ଶକ୍ତି ଏକ ଅଶ୍ୱଶକ୍ତି ସହିତ ସମାନ ।

୨ । ଭାରତର ମାନଭୂଉସ ଜାତିର ବର କନ୍ୟା ଉଭୟେ ବିଭାହେବା ସମୟରେ ପରସ୍ପର ବିପରୀତ ଦିଗରୁ ପ୍ରାୟ ଏକ ମାଇଲ ଗଡ଼ ଗଡ଼ ବେଦୀ ନିକଟକୁ ଆସନ୍ତି ।

୩ । ଡେନ୍‌ମାର୍କର ଆଗା କାର୍ଲସନ୍ ତାଙ୍କ ସ୍ତ୍ରୀଙ୍କୁ ୯୨ ବର୍ଷପରେ ପୁଣି ବିବାହ କରିଥିଲେ । ସେ ୧୮୧୧ ଖ୍ରୀଷ୍ଟାବ୍ଦରେ ତାଙ୍କୁ ଛାଡ଼ ଚାଲିଯାଇଥିଲେ ଏବଂ ୧୯୦୩ ଖ୍ରୀଷ୍ଟାବ୍ଦରେ ଫେରି ପୁଣି ତାଙ୍କୁ ବିବାହ କଲେ ।



Printed & Published by Sri R. K. Nanda B. A. D. Ed. at the Parijat Press, Telengabazar, Cuttack-1—1954.

